# ଧୃତରାଷ୍ଟ୍ରର ଆଖି

ରମେଶ ପ୍ରସାଦ ପାଣିଗ୍ରାହୀ

ଓଡ଼ିଶା ବୁକ୍ ଷ୍ଟୋର

କଟକ-୭୫୩୦୦୨

# ଧୃତରାଷ୍ଟ୍ରର ଆଖି

ରଚନା— ଶ୍ରୀ ରମେଶ ପ୍ରସାଦ ପାଣିଗ୍ରାହୀ

ପ୍ରକାଶକ— ଶ୍ରୀ ଗୋବିନ୍ଦଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦ ବିହାରୀ, କଟକ-୭୫୩୦୦୨



ମୁଦ୍ରଣ— ଶ୍ରୀ ପ୍ରିଣ୍ଟର୍ସ, ପୁରୀ

ପ୍ରଥମ ପ୍ରକାଶ— ଗଣେଶ ଚତୁର୍ଥୀ, ୧୯୭୭

ମୂଲ୍ୟ— ଛଅ ଟଙ୍କା ମାତ୍ର

ବନ୍ଧେଇ — ଏକ ଟଙ୍କା ମାତ୍ର

**DHRUTARASTRARA AAKHI**

Written by :
**Sri Ramesh Prasad Panigrahi**

Published by :
Sri Gobinda Charan Patra
**ORISSA BOOK STORE**
Binod Bihari, Cuttack-753002



Printed at:
Sri Printers, Puri

First Edition:
Ganesh Chaturthi, 1977
Price : Rupees Seven only

## ଭୂମିକା

“—ନା···ଏଇ ଖାତ, ଆଦର୍ଶ, ଚରଣର ମୁଖା ପିନ୍ଧି ତୁମେ ଏ ଘରେ କଥାବାର୍ତ୍ତା କରିପାରିବ ନାହିଁ ।

—କାହିଁକି ? ସେ ଗୁଡ଼ା କ'ଣ ଏ ଘରୁ ଉଠିଗଲା ?

—ଅନେକ ଦିନରୁ ଉଠି ଗଲାଣି ଯୋଉ ଦିନରୁ ତମେ ବାପାଙ୍କୁ ସେ 'ପଛଘର'ଟା ଛାଡ଼ି ଦେଇଛ ।”

—ଆଉ 'ଆଗଘର'ଟା ଆମର···ଆମ ସନ୍ତାନଙ୍କର । 'ପଛଘର' ପାଇଁ ଆମର ଚନ୍ତା ଦକ କଛୁ ନାହିଁ ।”

ଅତୀତ··· ! ତାକୁ ବନ୍ଧୁ ପଛରେ ଛାଡ଼ି ଆସିଛୁ । ହେଲେ ସାଙ୍ଗରେ ଗୁଳି ଆସିଛି ଟିକିଏ ସ୍ମୃତି—ଯିଏ ଛଡ଼େଇ ନେଲେ ବି ପାଖ ଛାଡ଼େନା—, ପଣତ ଧରେ— । 'ବର୍ତ୍ତମାନ'ର ଚଳନ୍ତି ସୁଅରେ ଟିକି ଟିକି ଢେଉ ଭଳି ମୁଣ୍ଡ ଟେକି ପୁଣି ଲୁଚି ଯାଏ ଏ ସୁଅର ଧଅସରେ । ମନେ ପକେଇ ଦିଏ 'ମୁଁ ଅଛି'ର ଭାବ । ରଙ୍ଗନେଲୀ ଆଲୁଅର ମଣିଷ— 'ଆଗ ଘରେ' ଥାଇ ସ୍ୱପ୍ନର ଦିଗନ୍ତଛୁଆଁ ବସ୍ତୁତା ଆଉ ବ୍ୟାପ୍ତି ଭିତରେ ନିଜକୁ ହଜେଇ ସାରିଲା ପରେ 'ପଛଘର'କୁ କଥା କହୁଛି ସେ କଥା ଶୁଣିବାକୁ ଡର କାହିଁ ? 'ମୁଁ ଅଛି' ସତ୍ତାକୁ ଉପଲବ୍ଧି କଲା ଜୀବନୀଶକ୍ତି ତାର କାହିଁ ? ?

॥ କ ॥

ତଥାପି···ଜମ ଲିହ୍ନଖା ଧଧାରି ଭୂଡାଣ୍ଠା 'ପଛଘରୁ' ହଠାତ୍ ମାଡ଼ିଆସେ 'ଆଗଘର'କୁ— । ବ୍ୟସ୍ତ ତ୍ୱରକ୍ତ ହୁଏ । 'ଆଗଘର' 'ପାଣି-ପବନ-ଆଲୋକ' ସବୁ ବନ୍ଦ କରିଦିଏ ତା'ପାଇଁ— । ଆଉ ବୁଢ଼ାଣ୍ଠା ଅଣନିଃଶ୍ୱାସୀ ହୋଇ ସେଇଠି ସେଇ 'ଆଗଘରେ' ଲୋଟି ପଡ଼େ । ବିଚ୍ରାର 'ଆଗଘର'··· ।

'ପଛଘର'କୁ ଠେଲି ଦେବାର ଉପାୟ ନାହିଁ···ସ୍ୱପ୍ନର-ଜାଲକୁଛୁଣ୍ଡ-ପନ୍ଦ୍ରିବା ମଣିଷ ପାଇଁ ଏଇ ଦରମର ଅଜାତ ବୁଢ଼ାଣ୍ଠା ସତେ କେତେ ଓଜନ !!

'ଆଗ ଘର'ର ସମସ୍ତ ସମ୍ଭାବନା ଭିତରେ 'କନ୍ତୁ ନାହିଁ'ର ଫାଙ୍କା ଆବାଜ, 'ଦପନ-ସାଉଁଠା-ମଣିଷ'ର ପିଞ୍ଜରା ଦୋହଲାଇ ଦିଏ··· 'ପଛଘର' ଡାକୁଛି···ହାତ ଠାରୁଛି···ଫେରିବ ??

କାହିଁକି ଫେରିବ ଅବା—ଅଯଥା ମୂଲ୍ୟଏ ମାଠ ଆଦର୍ଶ ଆଉ ଚରିହର ଧଦ୍ଦବନ୍ଧା ସ୍ଲୋଗାନ ଶୁଣିବାକୁ ? ତା'ପାଇଁତ ଅନେକ ଅନେକ ଗୀତା ପୁରାଣ ବାଇବଲ ଆଞ୍ଜ ବି ଗୁନ୍ଥି ରହିଛି । ନା, ଆମେ ସମସ୍ତେ ଆଗରୁ ଆଗକୁ ମାଡ଼ି ଆସିଛୁ···ଜୀବନକୁ ଜୀବନ ଭାବେ ଦେଖିବାକୁ ଶୁନ୍ଦିଛୁ···ସେ' ଦିନର ଧର୍ମ, ଅର୍ଥ, କାମ, ମୋକ୍ଷ, ଚତୁଃବର୍ଗ କାମ୍ନା ପାପ-ପୁଣ୍ୟର ପ୍ରହସନ 'ବର୍ତ୍ତମାନର' ନଗ୍ନ ଉଦ୍ଧାର-ଜୀବନ-ସଂଗ୍ରାମ ପାଇଁ ଏକ ଏକ ଅନ୍ଧରକାଣ୍ଡ ଅପାଂକ୍ତେୟ ଶବ୍ଦ ମାତ୍ର । ପାପ ପୁଣ୍ୟର ମୂଲ୍ ଭଉଁଲରେ ଆଉ କେତେଟା ଜୀବନକୁ ଧୋଇଧାଇ ମାର୍ଜିତ କରିଦେବାର ଦୁଃସାହସ ନାହିଁ ତାର । ଜୀବନର ସମସ୍ତ ପ୍ରୟୋଜନୀୟତାକୁ ମେଣ୍ଟେଇବାକୁ ଯାଇ 'ଜୀବନବୋଧ'ର ନୂତନ ଫର୍ମୁଲା ସେ ନିଜେ ହିଁ ଉଦ୍ଧାର କରିଛି । ସେଠି ଜୀବନ ଏକାନ୍ତ ଭାବେ ଜୀବନ ଆଉ ତାର ପରିଚୟ କେବଳ ସିଏ ନିଜେ । 'ଜୀବନ'କୁ ଖୋଜି ଖୋଜି ରାଜରାସ୍ତାରୁ ଓହରି ଆସି ଗଳି, ଉପଗଳି ହୋଇ କେତେବେଳେ ବାଟ ଭୁଲି ପଡ଼ୁଛେ, ଏଠି ଆଉ କାହାରି ସ୍ଥିତି ସେ ସହ୍ୟ କରିପାରେନା···

ଅଥଚ ଏ ମାଠ ଆଦର୍ଶର 'ସ୍ଲୋଗାନ ଦିଆ ବୁଢ଼ାଣ୍ଠା 'ପଛଘରର' ପଡ଼ିଥାଉ 'ଅନ୍ଧ ଧୃତରାଷ୍ଟ୍ର' ପରି...ଯାଏ ଆସେ କେତେ !

॥ ଖ ॥

···ମହାଭାରତର ଧର୍ମଯୁଦ୍ଧରେ ଲୁଚି ରହିଥିବା ଜଘନ୍ୟ ରକ୍ତର ନଗ୍ନରୂପକୁ ଦେଖିବାର ସୁଯୋଗ ଅନ୍ଧରାଜାର ନଥିଲା—ତା ଆଖିର ଏ ପାଖରେ କେତେ କେତେ ଘଟଣା ଦୁର୍ଘଟଣା ଘଟି ଯାଉଥିଲା ସେ ସବୁ ଦେଖିବାକୁ ଆଖି ନାହିଁ—ଏଣୁ ତାର ସ୍ଥାନ ଥାଏ ଆଗର କୁରୁକ୍ଷେତ୍ରରେ ଲୁଚିଛି—ଦୂର ଦ୍ରଷ୍ଟା ସଞ୍ଜୟ, ବିଦୁର ସୂକ୍ଷ୍ମ ଦର୍ଶିତାର ମଣି-ମୁକ୍ତା-ଖଚିତ ରାଜଉଆସର ଚଉକାନ୍ଥ ଭିତରେ—। ଝରକା କବାଟ ଲଗା 'ପଥରଘର'ର ଇଟାମାଟିର କାନ୍ଥ ଭିତରେ—। କିନ୍ତୁ ଦେଖି ପାରୁଛନ୍ତି—। ଆଉ ତାର ଆଖି···? ମହାଭାରତର ସେଇ ସଞ୍ଜୟ ବିଦୁରଙ୍କ ଆତ୍ମା ନଷ୍ଟହୋଇ ଯାଇଛି। ଜୀବନ ପାଇଁ ଚାଲିଥିବା ନାଡ଼ନାଳିଆ ଅର୍ଥହୀନ ସଂଗ୍ରାମର ଗୀତ ଗାଇବାକୁ କେହି ପାଖରେ ନାହିଁ···ମେଞ୍ଚାଏ ପିଜା ଦେଇ ଦାଅ ହାଟରେ··· ଧୂଆଁର କୁହୁଡ଼ିରେ ଅନ୍ଧାରୁଆ ଗମ୍ବୁଜକୁ ମନକୁ ମନ···। ଏଥର ନିଜର 'ଆଗଘର ମଣିଷ'।

ହେଲେ 'ପଥରଘର' ରେ ଆଖିଥିଲା ଅନ୍ଧ ବୃଦ୍ଧାଟା ଏତେରେ କ'ଣ କିଛି ଦେଖିପାରୁନ? କିଛି ବୁଝି ପାରୁନ?? ମହାଭାରତର ସେଇ ଜନ୍ମାନ୍ଧ ରାଜାଟା ଆଖିରେ କିଛି ଦେଖି ପାରୁ ନଥିଲା ତ ପାପ-ପୁଣ୍ୟର ବୋଝ ଉଠାଉଥିଲା କେମିତି?

ଝରକା ସେପାଖରୁ ଆଖି ବୁଜି ସବୁ ଦେଖି ପାରୁଥିଲା—ସବୁ ବୁଝି ପାରୁଥିଲା କିନ୍ତୁ କିଛି କରିପାରିବା ଭଳି କ୍ଷମତା ତାର ନଥିଲା। ତେଣୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥିଲା—"କିଏ ମଲା? କୌରବମାନେ? ନା···ପାଣ୍ଡବ?" ସିଏ କେବେ ନିଜ ମନକୁ ବୁଝେଇବାକୁ ଯାଇ 'ଆଗଘର'ଟାକୁ ପରି ଥାପୁଥିଲା, ତାର ହାତତିଆରି ମଣିଷ ତାର ଆଗରେ ଅଭିଯୋଗ ଆଣୁଥିଲା—"କାହିଁକି ଆସିଲି ଏ 'ଆଗଘର'କୁ? ଏ ଘରେ ସବୁ ଆଖି ବୁଜି ରହିବାକୁ ହୁଏ···"

ତାର ରକ୍ତ ଆଉ ସ୍ନେହରେ···ଜନ୍ମକଲା ସନ୍ତତି···ତା' ମନର ସାଇତା ସରାଗ···ତା' ଆଖିର ଥୋପା ଥୋପା ସ୍ୱପ୍ନକୁ ରୂପ ଦେବାରେ ଆମ୍ଭେ ଅସମର୍ଥ ହେଲୁ, ଅଯୋଗ୍ୟ ହେଲୁ, କିମ୍ବା ନିଜେ ନିଜ 'ମହାଭାରତ'ର ସୃଷ୍ଟି କରି ତା ସ୍ୱପ୍ନକୁ ଭାଙ୍ଗି ରୁଜି ଛତ୍ରଭଙ୍ଗ ଦେଲୁ, ନହେଲେ ଜବରଦସ୍ତ

ତା ଆଖିରେ ଅନ୍ଧପଟୁଳି ବାନ୍ଧି ଦେଇ 'ଧୃତରାଷ୍ଟ୍ର' ଗୌରବ ଦେଲୁ ବୋଲି, ସିଏ ଆମକୁ ଅଭିଶାପ ଦେବ ? ଆମଠୁ ଦୂରେଇ ଯିବ ? ଆଖି ବୁଜିବୁଜି ଯିକା ଟାଣିବ ନହେଲେ ଆଖିମଟିକା ମାରି ହସିବ ବହେ···ତାକୁ କେହି ନପଚାରନ୍ତୁ ପଛେ ସିଏ ସମସ୍ତଙ୍କର । ଏ ଘରେ ତାର ସ୍ଥିତି ପୁରୁଣା— କେତେ ପୁରୁଣା—ଏ ସଂସ୍କୃତି ଏଇ ପରମ୍ପରାର ମିଶାମିଶି ବାସ୍ନା ତା ଦେହରେ— । ତାର ପ୍ରତୀକ ଭାବେ ସେ ବଞ୍ଚିବ । ପାହାଡ଼ୀ ଝରଣାର ଚହଲ ଦର୍ପଣରେ ତା ମୁହଁ ସ୍ପଷ୍ଟ ନଦିଶିଲେ ମଧ୍ୟ ଝାପ୍‌ସା ଝାପ୍‌ସା ତ··· ଆଉ ଏଇ ନୂଆ ପାଣିରେ ହାଲୁକା ହାଲୁକା କୃତ୍ରିମ ଭଳି ସେ ଭାସି ଯିବ କେମିତି ? ସିଏ କେତେ ଓଜନ !!

"—ବିକଳିହେଉନି । ଖୁବ୍ ଓଜନ ।

—ଚେଷ୍ଟା କର ପଛଘରଟାରେ ଠେଲି ଦେଲେ ଯାଇ ରକ୍ଷା ପାଇଯିବା ।

—ଜମା ଆଦୌ ଘୁଞ୍ଚୁ ହେଉନି ।

—ଏମିତି ଠିଆ ହୋଇ ରହିବା ?

—ଏଇ ଆଗ ଘରଟାରେ ?

—ଉପାୟ ନାହିଁ ।"

ଏଇ ତେଲ-ଚକଟା-ପୁରୁଣା-ସଂସ୍କୃତି ବୁଢ଼ାଟା ! ଯାହାକୁ ଆଜିର ବୋହୂଗଲା ସୁଅରେ ଭାସିଯାଇ 'ପଛଘରେ' ଅଟକେଇ ରଖିଛୁ—, ତମେ ସେଇଠି ଥାଅ—ଆଖିମାରି ହସ ନହେଲେ ଅଭିଯୋଗ ବାଡ଼— ଆମର କିଛି ଯାଏ ଆସେନା— । ସତେ ଯେମିତି ଆମରି ଦୟାର ଦାନ ଝଡ଼ାରେ ବଞ୍ଚିଛୁ ଅଣନିଃଶ୍ୱାସୀ ହୋଇ—ଆମରି ସ୍ମୃତିରେ, ମୁଠାଏ ପିଣ୍ଡର ଦାବୀ ନେଇ ନହେଲେ ଶ୍ରାଦ୍ଧ ଆଉ ସମ୍ପର୍କର କାମନାରେ—ହେଲେ 'ଆଗଘରେ' ତାର ଉପସ୍ଥିତି ଅବାଞ୍ଛନୀୟ । ତାକୁ କାନ୍ଧରେ ବୋହି ଆମେ ବାଟ ଚାଲି ପାରିବୁ । ଆମପାଇଁ ଏଇ ପୁରୁଣା ଅତି ପୁରୁଣା ସଂସ୍କୃତିଟା ଠିକ୍—"ବାପ ପରି ! ପର ନୁହେଁ ଅଥଚ କେତେ ଆପଣାର !" ହେଲେ ମଧ୍ୟ ଗୋଟାଏ ବୋଝ, ଗୋଟାଏ ଓଜନିଆ ଓଜନିଆ ଭାବ ।

|| ଘ ||

ଆପାତତଃ ଏଇ ଆମର 'ଧୃତରାଷ୍ଟ୍ର'— ଏକ ଅନ୍ଧ ଦିଗନ୍ତ, ଏକ ଦୃଷ୍ଟିଶକ୍ତିହୀନ ଅଦ୍ରୁଷ୍ଟା ଚିନ୍ତନ, ଆମର ଅତୀତ, ବୃଦ୍ଧ ହେଉ ଅଥବା ବୃଦ୍ଧ ଜୀବନର ପ୍ରତୀକିତ ସଂସ୍କୃତି ଓ ପରଂପରା ହେଉ କିମ୍ବା ତାର ମୂଲ୍ୟବୋଧ ହେଉ, ଯିଏ ଏକାନ୍ତ ଭାବେ ଆମର—, ଯିଏ ଦୂରରେ ରହି ଶୁଭ ମନାସେ ନ ହେଲେ ଅଯଥା ଆସି ବ୍ୟସ୍ତ କରେ ।

'ଧୃତରାଷ୍ଟ୍ରର ଆଖି'ରେ ଯେଉଁ ଚରିତ୍ରଗୁଡ଼ିକ ଅଯଥା ବ୍ୟସ୍ତ ହୁଅନ୍ତି—, କ୍ଲାନ୍ତ, ସଫୋକେସନର ଦୀର୍ଘଶ୍ୱାସ ଭିତରେ, ବିଶ୍ୱାସଠୁଁ ବହୁ ଦୂରରେ ଟିକିଏ ନୂଆ ଅନୁଭୂତି, ଛୁଡ଼ିକାଏ ସ୍ୱପ୍ନ, ନହେଲେ ବଡ଼ ହେବାର ନିଶା ଖାଇ କିଏ ଗୋଟାଏ ମିଛ ଆଦର୍ଶ ପଛରେ ଗୋଡ଼ାଇଲା ବେଳକୁ କିଏ ନିଜକୁ ପ୍ରଶସ୍ତରୁ ଆହୁରି ପ୍ରଶସ୍ତ କରିଦେଇ ଦୁନିଆଟାକୁ ରଙ୍ଗହୀନ ସ୍ୱାଦହୀନ ଦେଖିଛି, କିଏ ବୈଦେହୀ - ଖିଆଲୀ ମନର ସ୍ୱର୍ଣ୍ଣମୃଗ ହୋଇ ତା ଚାରିପାଖେ ଘୂରି ଲୁଚକାଳି ଖେଳିବାକୁ ଚେଷ୍ଟା କରୁଛି । ସମସ୍ତ ସ୍ୱାଭାବିକ ଭାବେ ଗୋଟିଏ ବନ୍ଧୁରେ ବୃତ୍ତ କାଟି ଘୂରି ବୁଲୁଛନ୍ତି ଜୀବନର ସମସ୍ତ ଅସ୍ୱାଭାବିକତା ଭିତରେ ଜୀବନ ଟିକିଏ ପାଇବେ ବୋଲି ।

............ମୁଠାଏ ବାଲି, ଟିକିଏ ତାପରେ ଯିଏ ତାତେ ଆଉ ତତାଏ ନିଜେ ଆଉଟୁପାଉଟୁ ହୋଇ ଅନ୍ୟକୁ ଆଉଟାଏ — ପାଖକରେ ସ୍ମୃତି ଆଉ ପାଖକରେ ସ୍ୱପ୍ନ - ସ୍ମୃତି ଆଉ ସ୍ୱପ୍ନର ମିଶାମିଶି ରଙ୍ଗରେ ଜୁଡ଼ିବୁଡ଼ି ରେଖା - ଲେଖାର ଚିତ୍ରଟିଏ — ସ୍ମୃତିର ଗନ୍ତାଘର, ଖିଆଲି ସଂତାପ ମନର ଆଶା ସୌଧ ଗଢ଼ିବାରେ ମୁଠାଏ ବାଲି ବ୍ୟତୀତ ଯିଏ ଆଉ କିଛି ନୁହେଁ— ସେଇ ହେଉଛି ସିକତା - ଏ ଘରର ବଡବୋହୂ - ସଂତାପ ମହାନ୍ତିର ସାଇତା ସବୁଜ ଦୁଆ ଟୋପାଏ ସିନ୍ଦୂର — ସେଣ୍ଟେଟେଶଏଟ୍‌ର ଷ୍ଟେନୋ - ସ୍ମୃତିର ସ୍ମରଣ ବେଳାରେ ଗୁଲୁ ଗୁଲୁ ଯିଏ କସମ କସମର ଶାମୁକା ଗୋଟେଇଛି — ଲଦା ଲଦି ବୟସ ଆଉ ରୂପର 'ଅଛି' ଭାବ ତଳେ ଯିଏ କ୍ଲାନ୍ତ ଆଉ ସଫୋକେସନ୍‌ର ଗୋଟିଏ ଧରାଦେଇଥିବା ଲରିକ୍ - ଓଡ଼ଣାଟାଣି ଲୁଚି ଆଉ ମାଛ ତରକାରି ରାନ୍ଧି ଓଡ଼ିଆଘରର ବୋହୂ ହେବା ଅପେକ୍ଷା ଯିଏ କେବଳ "ମାଆ ହେବାକୁ ଚାହିଁଛି ।"— (ଭବିଷ୍ୟତର ସ୍ୱପ୍ନରେ ?) ବର୍ତ୍ତମାନ ପଛରେ ଧାଉଁ ଧାଉଁ ରୁଟି ଡ଼ାଲମାରି ଧରାବନ୍ଧା ଜୀବନଟା ଯା'ପାଇଁ ହୋଇଯାଇଛି କେବଳ ଦୀର୍ଘଶ୍ୱାସ ଆଉ ଦୀର୍ଘଶ୍ୱାସ—ସବୁ

ସଂଘାତ, ସଂଘର୍ଷ ଆଉ ବୈଫଲ୍ୟ ଭିତରେ ଗୋଟିଏ ଛନ୍ଦରେ ଆଗେଇ ଗଲା, ଟ୍ରସ୍ଟ୍ରଶଷ୍ଟା ଜର୍ସିଗାଇ, ବିଦେଶୀ କୁକୁଡ଼ା, ଇଣ୍ଡଷ୍ଟ୍ରି, ଫାର୍ମ— ସବୁ ସ୍ୱପ୍ନ ଆଉ ସମ୍ଭାବନାକୁ ପୋଛି ପୋଛି ତେଲ ଲୁଣର ସଂସାରକୁ ଆବୋଶ ବସିଛୁ - ସେଇ ସିକତା, ଆକାଶ ଉପରୁ ତଳକୁ ଗୃହିଁଲେ ପୃଥିବୀଟା ଯା'ପାଇଁ ଅନେକ ଟ୍ଲୋଟ— ।

............ଅସରନ୍ତି ବରଷା, ଆକାଶରୁ ପୃଥିବୀ— ହାଲୁକାଏ ପବନ— ଝଲକାଏ ହସ - ଓଦା ଓଦା ଭାବ— ଇଚ୍ଛା, ଖାଲି ଅସରା ପରେ ଅସରା ବରଷି ଯିବ - ଆଉ ସେ ବରଷାରେ ଭିଜି ଭିଜି 'ନୂଆ ନୂଆ ଅନୁଭୂତିର' ଆକାଶ ଫୁଲ ଗୋଟେଇବାକୁ ତାକୁ ଭଲ ଲାଗେ— 'ବର୍ଷା।' ବୃଦ୍ଧ ସୀତାନାଥ ପରିବାରର ଅଲଅଲି ଝିଅ - ପାହାନ୍ତ ଝରଣା ପରି ଚଳଚଞ୍ଚଳ - ଆପଣାକୁ ସାଇତି ରଖିବାକୁ ଗ୍ରହିଁନି, ଅଥଚ ଆପଣାଠି ପ୍ରୟୋଜନ ସରିନି ବୋଲି ଯିଏ ଅନ୍ଧାର ଭିତରେ ଘସି ମାଜି ହେବାକୁ ଭଲପାଏ— ଜୀବନଟା ତା'ପାଇଁ କୁତୁକୁତୁ ଭଳି - ହେଲେ ମଧ୍ୟ ଅନିର୍ଦ୍ଦିଷ୍ଟତା ଉପରେ ଆସ୍ଥା ରଖି ଜୀବନର ସେଭେନ୍‌ଥ କାର୍ଡ ଉଠେଇବାକୁ ପ୍ରସ୍ତୁତ— ଜୋସେଫ୍, ପ୍ରେମଦତ୍ତର ବିକଳ୍ପ ଖିଆଲି ମନର ଗୋଟାଏ ଗୁଣୁଗୁଣୁ ଭାବ— ନ ହେଲେ ଗଲା ରାତିର ସ୍ୱପ୍ନ — ବୟସର ଚାପ ତଳେ ଗୋଟାଏ ପିଲାଳିଆ ଗ୍ରଇ ଛଟା - 'କିଛି ଲୁଚେଇ ଜାଣେନା'ର ଖୋଲାମନ ଗୃହିଁଛି ଗୋଟାଏ 'କଣ୍ଢେଇ ଗଛ' ଖେଳିବ ବୋଲି - ରାତି ଆଉ ସକାଳର ମଝାମଝି ମିଠା ପାହାନ୍ତର ଦଗଦଗିଆ ବଇଂଶୀର ମୂର୍ଚ୍ଛନାଟିଏ — ।

ବୋଝ ବୋଝ ଅନୁତାପ - ଛନ୍ଦହଜା ଜୀବନ - ଘରର ବଡ଼ପୁଅ ସଂତାପ ମହାନ୍ତି ଯିଏ ଜୀବନଟା ସାରା ଖାଲି ସ୍ୱପ୍ନ ଦେଖି ଆସିଛି— 'ବଡ଼ ହେବ -ଘରକୁ ଟଙ୍କା ଆସିବ - ଇଣ୍ଡଷ୍ଟ୍ରି, ଫାର୍ମ, ବଡ଼ରୁ ଆହୁରି ବଡ଼ - ଆଦର୍ଶ ପଛରେ ଗୋଡ଼ାଇ ଗୋଡ଼ାଇ ଜୀବନକୁ ଫାଙ୍କି ଦେଇ ପାରିନି— ଯିଏ ଜୀବନର ସଂଜ୍ଞା ନଜାଣି 'ଜୀବନର ବିପକ୍ଷରେ, ସୃଷ୍ଟି ବିପକ୍ଷରେ ବିପ୍ଳବ କରିଛି - ସାମ୍ୟବାଦର ଦୋହାଇ ଉଠେଇ କମ୍ୟୁନିଷ୍ଟ ବ୍ରତ ପିନ୍ଧି ସତ୍ୟାଗ୍ରହ ଅନଶନ ସବୁ କରିଛି —, ହେଲେ 'ଜୀବନ' ତା' ହାତରେ ଧରା ଦେଇନି— ଦୁନିଆକୁ ଚିହ୍ନିବା ଭଳି ଆତ୍ମ ପ୍ରତ୍ୟୟ ତାର ନାହିଁ — ବିଶ୍ୱାସ, ସଂଦେହ, ଅସନ୍ତୁଷ୍ଟତା ଓ ଅସ୍ଥିରତାର ଖୁନ୍ଦା ଖୁନ୍ଦି ଗୋଟିଏ ଦୁର୍ବଳ

ଅଭିବ୍ୟକ୍ତି—ଭଲପାଇବାଟା ଯା'ପାଇଁ ମୁହୂର୍ତ୍ତର ସେଣ୍ଟିମେଣ୍ଟ—ବ୍ୟଧି ଗିକଟା ପାଇଁ ତୃଷ୍ଣା ଅତୃଷ୍ଣା ଅନ୍ଧଯୋଗଟିଏ - ଜୀବନର ଅର୍ଥହୀନ ସଂଗ୍ରାମ ଆଉ ହତାଶାର ଲମ୍ବା ଦୀର୍ଘଶ୍ୱାସ ତଳେ ସମସ୍ତ ବିଫଳତାର—ଇମୋସନାଲ୍-ଟ୍ରାଜେଡ଼ି—ସିଏ ସଂତାପ ମହାନ୍ତି, ଏକଦା ରେଭେନ୍‌ସା କଲେଜର ପ୍ରେସିଡ଼େଣ୍ଟ ଆଉ ଆଇ.ଏ.ଏସ୍, ପାଇଁ ସ୍ୱପ୍ନ ଦେଖିଥିବା ସେଦିନଟେଶଅଟର ସହ୍‌ପେଣ୍ଡେଡ କଳ୍ପନା —।

............ ଚେନାଏ ପ୍ରଜ୍ଞା, ଟିକିଏ ଚେତନା - 'ମୁଁ ମୋ ବାଟରେ ଗ୍ଲୁକ୍ଷ'ର ଖବରିଆଳୀ ବାଟୋଇ - ହୁଇସିଲ୍ ମାରିବ - ଅଭିନୟ କରିବ - ଫିଲ୍ମରେ ହିରୋ ହେବ - ବମ୍ବେ ତା ପାଇଁ ବିଦେଶ - ସିଏ ସଂବିତ୍......ନାଟକର......ଘରର ସାନପୁଅ, ଗଞ୍ଜେଇଟଣା ହିପ୍‌ପୀ ନୁହେଁ — ଏହି ୨୨ ବର୍ଷର ତରୁଣ ପାଇଁ "ପ୍ରେମ, ମାନେଇ ତ ଫିଲ୍ମ, ବମ୍ବେ ଟାଇପ୍"— ହାଲୁକା ହାଲୁକା ଜୀବନ - "ଉଚ୍ଚ ହେବା ପାଇଁ ନାହିଁ ଆଶା ମୋର" ତା ଜୀବନର ଶେଷ ପ୍ରଣବ - ଗାମ୍ଭୀର୍ଯ୍ୟ ଆଉ ସ୍ଥାଟନେଶର ବହୁ ଦୂରରେ ଗୋଟିଏ ଚପଳ ଦୃଷ୍ଟି - ମନ ଗହ୍ୱରରେ ଛଳନାର ସ୍ଥାନ ନାହିଁ - ଚଳନ୍ତି ଦୁନିଆଁର ନୂଆ ରୂପ ଦେଖି ପେଟଭରି ହସିଛି ଆଉ ପ୍ରତିଟି ଜୀବନ ପାଇଁ ଆଙ୍ଗୁଠି ଦେଖେଇ କହି ଦେଇଛି "ଏଇତ ଜୀବନ"— ସଚେତକ ସଂବିତ୍, ଯିଏ ଡ୍ରାମା କରି କରି ବୃତ୍ତି ବୃତ୍ତି ବର୍ଷ ବି: ଏ: ଫେଲ୍ କରୁଛି ।

ଜୋସେଫ ଓ ପ୍ରେମଦତ୍ତ - ଗୋଟିଏ ତୁଳୀର ଦୁଇଟି ରଙ୍ଗ । ବର୍ଷା ମନର ଦୁଇଟି ସବୁଜ ବିନ୍ଦୁ । ଜୋସେଫ୍ ଡ଼େପୁଟୀ ସେକ୍ରେଟାରୀ ଜାକୋବ ମହାପାତ୍ରଙ୍କ ପୁଅ - ଅସୁମାରୀ ସ୍ୱପ୍ନ - ପ୍ରେମ ତା' ପାଇଁ ବୋହୂ-ବୋହୂଘ ଖେଳ ହେଇପାରେ, ତା' ଭାଗ୍ୟରେ "ଗାଢ ଆନ୍ତର ପାବନ - ସ୍ୱପ୍ନ ଦେଖିବା ଏକ ସୁନ୍ଦର ଅନୁଭୂତି; ମୁହୂର୍ତ୍ତର ବାସ, ରୂପ ଆଉ ଆତ୍ମ ସମ୍ମାନକୁ ଯିଏ ବଡ଼ ବୋଲି ଭାବେ । ନକ୍ସନତା ... କ୍ଲାନ୍ତି...ଟଙ୍କା...ସଫୋକେସନ୍... ସିଏ ପ୍ରେମଦତ୍ତ... ଦସ୍ୟମାସ୍ତ ଭାବ୍ରେ ନିଃସଙ୍ଗ ଆଉ ବଞ୍ଚିତ - ରେସକୋର୍ସ ଜୁଆଗୃହର ଆଡ଼୍ଡାରେ ସେଦିନର ହୋଟଲରେ ବାସନ ମାଜୁଥିବା ପ୍ରେମଦତ୍ତ ଐଶ୍ୱର୍ଯ୍ୟ ପ୍ରତିପତ୍ତିକୁ ଆପଣାର କରିଛି । କୁଡ଼ କୁଡ଼ ଟଙ୍କା, ରେଷ୍ଟୋରାଁ, ବେଶ୍ୟା, ମଦ ଆଉ ଫୁଲ୍...କେହି ତାକୁ ପରିବାରଟିଏ ଦେଇ

॥ ଛ ॥

ପାରିଲେନି । "ପ୍ରେମ ପାଇଁ ପ୍ରାଣବଳି ଦେବାରେ ପସ୍ତାକାଂକ୍ଷା ଅଛି"ର ଦର୍ଶନ ତଳେ ବର୍ଣ୍ଣା ମନର ଅନ୍ଧାର ଇଲାକାରେ ଦୀପଟିଏ ହୋଇ ଜଳିବାର ମନ ନେଇ ସଂବତ୍ରକୁ ମାଗିଛି : "ପାରିବାରିକ ଜୀବନଟା" ··· ଆଇ. ଏ. ଏସ୍. ମାନଙ୍କ 'ସ୍ତ୍ରୀ' ଭଳି ସ୍ତ୍ରୀ ଟିଏ ।

ଏ ସମସ୍ତେ ଯାହାର ସଂଜନ୍ମ - ବଦୂର, ନ ହେଲେ 'ଆଖି'ର 'ଆଖି', ସିଏ ହେଉଚ ଏ ଘରର ବୃଦ୍ଧ ସୀତାନାଥ—ଏ ମହାଭାରତର ଧୃତରାଷ୍ଟ୍ର··· ଜୀଅନ୍ତା ସନାତନ ସଂସ୍କୃତିର ଏକ ନିଚ୍ଛକ କାବ୍ୟିକ ପ୍ରକାଶ ।

୬୨ ବର୍ଷର ବୃଦ୍ଧ ସୀତାନାଥ ! ତାର ଜୀବନଯାକର ସାଇତା ସ୍ୱପ୍ନ - ପୁଅ ବୋହୂର ସହଜ ସୁଲଭ ସଂସାର -, ସାନ ପୁଅର ଭବିଷ୍ୟତ -, ଝିଅ ବର୍ଣ୍ଣା ପାଇଁ ତାର କର୍ତ୍ତୃତ୍ୱ -, ପୁରୁଣା ଗୃହଆଦ୍ଧ - , କୋଉଟା ଆପଣାର ହେଇପାରିଲାନି — ଅହମିକାର ନିଆଁରେ ହସ୍ତିନାର ରାଜସିଂହାସନ ପାଇଁ କୁରୁକ୍ଷେତ୍ରରେ ନିଆଁ ଲଗିଲା—ଅନ୍ଧ ରାଜାର ଚକ୍ରବର୍ତ୍ତୀ ମାନଗୋବର୍ଦ୍ଧନର ପିତା ହେବାର ଗୌରବ ସେଦ୍ଦିନର ନିଆଁରେ ପୋଡ଼ିଜଳି ପାଉଁଶ ହେଇଗଲା ପରି ବୃଦ୍ଧ ସୀତାନାଥ ପରିବାର ଭିତରୁ 'ଜୀବନ' ହଜିଗଲା ଜୀବନ ସମସ୍ୟାର ବହୁମୁଖୀ ରାସ୍ତାରେ — ।

ସଂତାପ ମହାନ୍ତି ; ହାତରେ ସସ୍‌ପେନସନ୍ ଅର୍ଡ଼ର, ଆଖି ଆଗରେ ଅଯୋଗ୍ୟ ଭାଇ, ଭଉଣୀ, ଅକ୍ଷମ ବାପ - ଆଉ ସ୍ତ୍ରୀ ସିକତା - ସିଏ ଏଇ ସଂସାରକୁ ତୁଲେଇବାର ଦାୟିତ୍ୱ ନେଇ ଜାକୋବ ମହାପାତ୍ର ଭଳି ଅଫିସରର କର୍ତ୍ତୃତ୍ୱ ତଳେ ମୁଣ୍ଡ ଗୁଞ୍ଜିଛି — ଜୋସେଫ୍ ମହାପାତ୍ର ସଙ୍ଗେ ଦିଲ୍ଲୀ ଉଡ଼ିଯିବାର ସ୍ୱପ୍ନ ଦେଖୁଛି — ପେଟରେ ପେଟେ ଶୋକ, ମନରେ ଭର୍ତ୍ତି ନିଆଁ ; ସଂତାପ, ସିଏ ନିଜଘରକୁ ସଜାଡ଼ିବାରେ ସଂପୂର୍ଣ୍ଣ ଅକ୍ଷମ, ସିଏ ଦେଶର ସମସ୍ୟାକୁ ଆପଣାର କରିବାକୁ ଗୃହିଁଛି - ବିପ୍ଳବ ନାଁରେ ବୋମା ତିଆରି କରୁଛି, କମ୍ୟୁନିଷ୍ଟ ସାଜୁଛି — । ଭାଇ ସଂବତ୍ ଫିଲ୍ମରେ ହିରୋ ହେବାର ସ୍ୱପ୍ନରେ ମସ୍‌ଗୁଲ୍ — ଗୁରି ଗୁରି ବର୍ଷରେ B.A ଟା ପାଶ କରିପାରିଲାନି — । ଆଉ ଭଉଣୀ ବର୍ଣ୍ଣା ନିଃସଙ୍କୋଚରେ ବଡ଼ଭାଇ ଉପରୁ ଆସ୍ଥା ଉଠେଇ ନେଇ ପ୍ରଶ୍ନ କଲା — "ତମେ ମୋତେ ବଡ ଘରେ ବାହା ଦେଇ ପାରିବ ?" ଅଥଚ ନିଜ ସମସ୍ୟାକୁ ନିଜ ହାତକୁ ନେଇ ବର୍ଣ୍ଣା,

ଜୋସେଫ୍ ଓ ପ୍ରେମଦତ୍ତର ବୋଦ୍‌ଗ୍ରେଷ୍ଟ ଖେଳର ବୋହ୍ନ ସାଜିବାଙ୍କୁ ପଠେଇଥିଲେ - ପ୍ରେକେଣ୍ଟେସନ୍ ଲେଭରେ ମିଛ ମିଛକା ଜନ୍ମଦିନ ପାଳନ କଲା । ଅଭିଯୋଗ — "ଗରିବଘରେ ଜନ୍ମହେବା ପ୍ରଥମ ଅପରାଧ, ଦ୍ୱିତୀୟ ଅପରାଧ ବଡହେବାର ସ୍ୱପ୍ନ ଦେଖିବା ।" କିନ୍ତୁ ସମସ୍ତେ ନିଜ ନିଜ ଇଲାକା ଭିତରେ ରହି ସ୍ୱଭାବ ସୁଲଭ ସ୍ୱପ୍ନହିଁ ଦେଖିଚନ୍ତି; ଟିକିଏ ଭଲରେ ରହିବେ, ନୂଆ ନୂଆ ଅନୁଭୂତିର ଶାମୁକା ଗୋଟେଇବେ । ଏ ଜୀବନ ସମସ୍ୟା କେବଳ ବହିର୍ମୁଖୀ ନୁହେଁ, ଅନ୍ତର୍ମୁଖୀ ଅନେକ ପରିମାଣରେ । ସମସ୍ୟା — ଶକୁନିର ଛଟପିଲ ଇଙ୍ଗିତରୁ ଏହି ପାତ୍ରବାଙ୍କ ଜୀବନ ( କାହାଣୀରେ ) ସଂଘର୍ଷର ଜନ୍ମ — ।

ଏଇ ସଂଘର୍ଷ, କାହାଣୀ ଅପେକ୍ଷା ଚରିତ୍ରରେ ହିଁ ବିଶେଷ ଭାବେ ଫୁଟି ଉଠିଛି । ପ୍ରେମଦତ୍ତ, ଯିଏ ଜୀବନଟା ସାରା ନିଃସହାୟ ଭାବେ ଘୂରି ବୁଲୁ ବୁଲୁ ବର୍ଷାର ଭରସା ପାଇ ଭାବିଛି ବର୍ଷାଟା ତାର ଗୋଟାପଣେ ··· ଆଉ ଜୋସେଫ୍ ଯାହାକୁ ନେଇ ବର୍ଷା ଦିନ କଟ୍ଟାଟା ଆଗରୁ ସ୍ୱପ୍ନ ଦେଖି ଦେଖେଇଥିଲା, ସେଇ ଜୋସେଫ ଭାବେ — ବର୍ଷା ମୋର ଏକାନ୍ତ ଭାବେ—। ବର୍ଷା ପାଇଁ ପ୍ରତୀକ୍ଷିତ ଏକ ସନ୍ଧ୍ୟାରେ ଜୋସେଫ୍‌ର ପ୍ରେମଦତ୍ତ ସହିତ ସାକ୍ଷାତ ହୁଏ ଅତି ନାଟକୀୟ ଭାବେ - ପ୍ରେମଦତ୍ତ ଆଉ ଜୋସେଫ — , ଗୋଟିଏ ଆଜିର ସ୍ୱପ୍ନ, ଅନ୍ୟଜଣେ ଗଲ୍‌ରାତିର ··· ବର୍ଷା କମିତ କାହାକୁ ଅଭ୍ୟର୍ଥନା କରିବ — ! ମୁହୂର୍ତ୍ତି କେଇଟା ତଳେ ଯେଉଁ ପ୍ରେମଦତ୍ତର କ୍ଳାନ୍ତ ··· ସଫୋକେସନର ଦୀର୍ଘଶ୍ୱାସ ସନ୍ଧ୍ୟାର ପରିବେଶଟିକୁ ଉଷ୍ମ କରି ତୋଳିଥିଲା; ଆକସ୍ମିକ ଭାବେ ଗୋଟିଏ ତୁଚ୍ଛ କ୍ରିୟାକଳାପ ଏବଂ ହାହାକାର ସଂଳାପ ମାଧ୍ୟମରେ ରୂପ ନେଇ ଗୋଟିଏ ହାସ୍ୟକର ପରିବେଶ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନାଟକର ମୂଳ ତଥ୍ୟକୁ ପରିବେଷଣ କରିବାରେ ସକ୍ଷମ ହୋଇପାରିଛି । ଜୋସେଫ୍ ଓ ପ୍ରେମଦତ୍ତର ଖିଆଲରେ ଜମି ରହିଥିବା ବର୍ଷା, ନାଟକର ଚରମ ପରିଣତିରେ କୌଣସି ବାସ୍ତବ ସମ୍ଭାବନା ନହୋଇ, ଆଣ୍ଟିକ୍ଲାଇମାକ୍ସ ଭଳି ଜୋସେଫ୍ ଓ ପ୍ରେମଦତ୍ତର ଅସୂୟା ଏବଂ ତାର ଈର୍ଷା ରଂଜିତ ତାତ୍ସଲ୍ୟ ଭିତରେ ରୂପ ନେଇଛି । ଜୋସେଫ୍ ପ୍ରତି ବର୍ଷାର ସମ୍ଭାବ୍ୟ ଶ୍ଳାଘା ରୂପେ ତାର ସଜ୍ଜିତ ଦାଢି ପ୍ରେମଦତ୍ତର ସେଣ୍ଟିମେଣ୍ଟାଲ୍ ମନକୁ ହଠାତ୍ ହିଂସ୍ର କରି ତୋଳିଛି ଏବଂ ଜୋସେଫ୍‌ର ଦାଢିକୁ ନିଜ

ଦାୟିତାର କାରଣ ବୋଲି ଭାବି ସେ ଚିତ୍କାର କରି ଉଠିଛି — "ଦାଢ଼ି ରଖିବା ଏକ ସାମାଜିକ ଅପରାଧ ଏବଂ ସେଗୁଡ଼ିକୁ କାଟିବା ମାନବିକ କର୍ତ୍ତବ୍ୟ—" ତେଣୁ ପ୍ରେମଦଣ୍ଡ ପାଇଁ ଜୋସେଫ୍ ମଣିଷ ନହୋଇ, ହୋଇଛି ଗୋଟାଏ ଛେଳି।"

ଠିକ୍ ସେମିତି ସନ୍ତାପ ଓ ସିକତାର ଚୈତନ୍ତିକ ସଂଘର୍ଷ ··· ··· ଯାହା ନାଟକରେ ଅଧିକ ସ୍ପଷ୍ଟ। ଯେ କେହି ଦର୍ଶକ / ପାଠକ ହଠାତ୍ ତାହା ଅନୁଭବ କରିପାରେ। ତେଣୁ ଯାହା ସ୍ପଷ୍ଟ ··· ସହଜରେ ବୁଝି ହେବ — ସେ ସମ୍ପର୍କରେ ଅଧିକା କିଛି ଆଲୋଚନା ନକରି ଅନ୍ୟ ବିଭବ ଗୁଡ଼ିକ ପ୍ରତି ଯଥା ସମ୍ଭବ ଆଲୋକପାତ କରିବି ।

ସମ୍ଭବତ୍, ମାଗାଜିନ ପୃଷ୍ଠାରେ ସେ ନଙ୍ଗଳା ଝିଅଟାକୁ ଦେଖେଇ ହସି ହସି ହସର ଫୁଆରି ବିଞ୍ଚି ଦେଇଛି, ଦର୍ଶକ ମହଲରେ ··· ··· ଠିକ୍ ସେମିତି ମୃତ ସୈନିକ ରୋଲ୍ ··· ···। ପରେ ପରେ ବୁଢ଼ା ବାପ ପୁଣି ଥରେ ବାଡ଼ି ଉଠେଇଛି ··· ଏଥର ବାଡ଼ି ଯୁଦ୍ଧ ··· ୨୨ବର୍ଷର ଯୁଆନ ପୁଅ ସହିତ ୬୨ ବର୍ଷର ବୁଢ଼ା ବାପର ··· ସୁସ୍ଥ ବର୍ତ୍ତମାନ ସହ ସ୍ଥବିର ଅତୀତର ··· ବଳ କଷାକଷି ··· ଜଣେ ହାରିବ, ଜଣେ ଜିଣିବ ··· ସ୍ୱାଭାବିକ ଗୋଟାଏ 'ବାଡ଼ି ଖେଳ' — "ସୁଆଙ୍ଗ" ହୁଏ —। ବାପ ପୁଅର ନୁହେଁ; ନୂଆ ଓ ପୁରୁଣା ସଂସ୍କୃତିର ।

ଅନ୍ୟ ମୁହୂର୍ତ୍ତରେ ସମ୍ଭବତ୍ ହସୁଛି ··· ତା ହସରେ ଦର୍ଶକ ମନ୍ତ୍ରମୁଗ୍ଧ ଭଳି ଘଟି ଯାଉଥିବା ଘଟଣା ପ୍ରତି ସଚେତନ ହେଲା ବେଳକୁ ··· ସଂବିତ୍ ହସୁଛି ଖାମଖିଆଲୀ ଭାବେ କେବଳ ନଙ୍ଗଳା ଝିଅଟିର ଫଟୋ ଦେଖି ··· ଅଥଚ ଏଇ ସଂବିତ୍ ସେ ଦିନର ସଂଧ୍ୟାଟାରେ 'ବର୍ଷା' ପାଇଁ ପ୍ରତୀକ୍ଷିତ, ତାର ନମ୍ବର ଲଗା ମଣିଷ ଭିତରୁ ଜୋସେଫ୍ ଓରଫ୍ "ନମ୍ବର ଓ୍ୱାନ୍" କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ବ୍ୟତିବ୍ୟସ୍ତ କରି ଦେଉଥିଲା —। "—ତମେ ସତରେ ବର୍ଷାକୁ ଭଲ ପାଉଛ ? ··· ପ୍ରେମ କରୁଛ ··· ? କେମିତି ପ୍ରେମ କଲ...? ··· ପ୍ରଥମେ କେଉଁଠି ଦେଖା ହୋଇଥିଲା — ? ଇତ୍ୟାଦି ଇତ୍ୟାଦି ଅବାନ୍ତର ପ୍ରଶ୍ନ ଭିତରେ ଗୋଟିଏ ଫିଲ୍ମର ପରିକଳ୍ପନା —। ତାର ଏ ପ୍ରକାର ସୁଆଙ୍ଗ

ଦେଖି ଦର୍ଶକ / ପାଠକ ହସି ଉଠିବା ସ୍ୱାଭାବିକ । ଏଇଠି ହଠାତ୍ ମନରେ ପ୍ରଶ୍ନ ଉଠେ ଏହା ନାଟକର ସୁଆଙ୍ଗୀକରଣ କି ? ସଂଳାପ ଗୁଡ଼ିକ ପଢ଼ୁ ପଢ଼ୁ ଅଥବା ଚରିତ୍ର ଗୁଡ଼ିକର ଉଦ୍ଭଟ ଚିନ୍ତା ଆଉ ଖାପଛଡ଼ା ବ୍ୟବହାର ଦେଖୁ ଦେଖୁ କିମ୍ବା ନାଟକର ଆଣ୍ଟି କ୍ଲାଇମାକ୍ସର ପୃଷ୍ଠା ଗୁଡ଼ିକ ଓଲଟାଉ ଓଲଟାଉ ମନେ ହୁଏ ଏହା ଆବସର୍ଡ କି ? ତେଣୁ କିଛି ଗୋଟାଏ ହେବ କି ହେଇଗଲା, ନହେଲେ ନାଟକର ମୌଳିକ ସତ୍ୟଟିକୁ ଖୋଜି ଖୋଜି ଦର୍ଶକ / ପାଠକ ବାଟବଣା ହେଇ ଚରିତ୍ର ସହିତ ହସି ହସି ପୁଣି ଫେରି ଆସି ଭାବେ, ଏଇଟା ସୁଆଙ୍ଗଟାଏ, ଆବସର୍ଡ ନୁହେଁ — । ତା'ହେଲେ ଆବସର୍ଡ଼ିଟି ଆଉ ସୁଆଙ୍ଗ ଭିତରେ ଦୂରତ୍ୱ କେତେ ?

ତେବେ ସୁଆଙ୍ଗର ଧର୍ମ କ'ଣ କେବଳ ହସେଇବା ? ବର୍ଷା ପାଇଁ ସଂବିତ୍ ହସିଛି ବୋଲି ତା ମନ ତଳେ କଣ ଗହ୍ୱର ଦାଗଟିଏ କାଟି ହେଇ ଯାଇଛି, ସେ କଥା କେବଳ ଭୂଇ ସଂବିତ୍ ହିଁ ଅନୁଭବ କରୁଥିବ । ଆଉ ଦର୍ଶକ ଅନୁଭବ କରୁଥିବେ ନାଟକ ଦେଖି, ଘରକୁ ଫେରି ସେ ସମ୍ପର୍କରେ ଟିକିଏ ଚିନ୍ତା କଲାବେଳେ; ଅନୁଭବ କରୁଥିବେ ପାଠକେ କଣ ପଢ଼ିଲି ବୋଲି ଆରମ୍ଭ କଲାବେଳେ ।

ଦର୍ଶକ ଓ ପାଠକ ମନରେ ଏ ପ୍ରକାର ଛାପ ପକେଇବାରେ ସଂଳାପ ଗୁଡ଼ିକ ମଧ୍ୟ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ଚରିତ୍ର ଗୁଡ଼ିକର ଭାବ ଭାବନା, ଚିନ୍ତା ଚିନ୍ତନ ଓ ଅବଚେତନ ମନର ପ୍ରସ୍ତାସକୁ ରୂପ ଦେବାରେ ସଂଳାପ ଗୁଡ଼ିକ ଅସଂଲଗ୍ନ ମନେ ହୁଏନା । ବର୍ଷା ଓ ପ୍ରେମଦତ୍ତର ସଂଳାପ, ବିଶେଷ ଭାବେ ସଂତାପ ଓ ସିକତାର ସଂଳାପ ଭିତରେ ଥିବା କାବ୍ୟିକତା ମନକୁ ସ୍ପର୍ଶ କରେ, "— ଦୁଇଦିନ ଷ୍ଟ୍ରାଇକ୍ ପରେ ମୁଁ ଚିତ୍ ହୋଇ ଆସନ୍ନ ଶୀତର ଚନ୍ଦ୍ରଟାକୁ ଦେଖୁଥିଲି । ତମେ ମୋ ପାଖରେ ବସିଲ । ମୋ ମୁଣ୍ଡରେ ହାତ ବୁଲାଇ ଆଣିଥିଲ । ତାପରେ ··· ··· ।" ତାପରେ ଏମିତି ଅନେକ ସଂଳାପ ଯାହା ପଢ଼ିଗଲା ବେଳେ କି ଶୁଣିଗଲା ବେଳେ ପାଠକ / ଦର୍ଶକ ନାଟ୍ୟକାରଙ୍କ ଭାବ ପ୍ରବଣତାକୁ ବେଶ୍ ଉପଲବ୍ଧି କରିପାରେ । ସଂବିତ୍‌ର ସଂଳାପ ଗୁଡ଼ିକ ନିଜେ ହସ ିବୋଲି ହୋଇ ନାଟକର ସୁଆଙ୍ଗତ୍ୱ ଘୋଷଣା କଲାବେଳେ, — "କ୍ଲାନ୍ତ" ··· "ସଫୋକେସନ ··· " ଭଳି କେତେକ

monosyllabolic ସଂଳାପ ବା ଖଣ୍ଡବାକ୍ୟ ନାଟକଟିରେ Absurdity ର ଦୋହଲା ଉଠଉଛି । ସିକତା , ସୀତାନାଥ, ବର୍ଷା ଓ ସଂବିତ୍ ଆଦି ଚରିତ୍ରର ସଂଳାପ ଗୁଡ଼ିକରେ ଅସଂଲଗ୍ନତା ଲକ୍ଷ୍ୟ କରି କେହି ନାଟକଟିକୁ 'ଅବସର୍ଡ'ର ଟୋପି ପିନ୍ଧେଇ ଦେଇ ପାରନ୍ତି । କିନ୍ତୁ ବାସ୍ତବ ସଂଳାପ ଗୁଡ଼ିକ କୌଣସି ମାତ୍ରାରେ ଅସଂଲଗ୍ନ ନୁହେଁ କିମ୍ବା ଚରିତ୍ର ଗୁଡ଼ିକ କଦାପି ଅସ୍ୱାଭାବିକ ନୁହନ୍ତି - ସମସ୍ତେ ଆତ୍ମ ସଚେତନ ଚରିତ୍ର, ପରିସ୍ଥିତିର ପରିପ୍ରେକ୍ଷୀରେ ବା ମାନସିକ ଦ୍ୱନ୍ଦ୍ୱ ଓ ଦୋଳନ ଗୃପାରେ ଆମେ ସମସ୍ତେ ଏମିତି ଖାପଛଡ଼ା, ଖାମଖିଆଲୀ ଭାବେ ଅନେକ କଥା ଭାବିଥାଉ ଆଉ କହିଥାଉ ମଧ୍ୟ । ତେଣୁ ସଂଳାପର ଏଇ ଉଦ୍ଭଟତା ପରିକଳ୍ପିତ ଚିନ୍ତନ ନୁହେଁ ବରଂ ଚରିତ୍ରର ସ୍ୱଭାବ ସୁଲଭ ପରିପ୍ରକାଶ । ଅନ୍ୟତମ ନୂତନତା ହେଉଛି ନିଛକ ଗାଉଁଲି କଥା ଶୈଳୀର ଆବରଣ ଭିତରେ ସଂଳାପର ପରିପ୍ରକାଶ — । "କି / ଫୁଲ ଣ / ଫୁଲ ହେ / ଫୁଲ ଇ / ଫୁଲ ଛି / ଫୁଲ ··· ? "ଫୁଲ" ଭାଷାର ଇଙ୍ଗିତ ଚପଳମନା ବର୍ଷା ଓ ସଂବିତ୍ ଭଳି ଚରିତ୍ର ମୁଖରେ ଦେଇ ନାଟ୍ୟକାର ନିଜର ପ୍ରୟୋଗବାଦୀ ମନର ପରିଚୟ କିପରି ଭାବରେ ଦେଇଛନ୍ତି - ତାହା କେବଳ ଲକ୍ଷ୍ୟ କରିବା କଥା । ଏହା ବ୍ୟତୀତ ସଂଳାପ ଗୁଡ଼ିକରେ ବୌଦ୍ଧିକତାର ଛାପ ମଧ୍ୟ ସ୍ଥଳ ବିଶେଷରେ ଲକ୍ଷ୍ୟ କରି ହୁଏ । ଅନୁଭୂତ ସ୍ତରରୁ ବିଚାର କଲେ ସଂଳାପ ଗୁଡ଼ିକ ବିଭିନ୍ନ ଅର୍ଥଯୁକ୍ତ ବୋଲି ମନେ ହୁଏ । ଜୋସେଫ ଓ ପ୍ରେମଦତ୍ତଙ୍କର 'ଦାଢି'କୁ କେନ୍ଦ୍ର କରି ସୃଷ୍ଟି ହୋଇଥିବା ସଂଳାପ, ସୀତାନାଥ ଓ ସଂବିତର 'ବାଡ଼ିମୁଣ୍ଡ' କିମ୍ବା ନାଟକର ସମାପ୍ତିରେ ଶବ 'ବୋହିନେବା' ପୂର୍ବାବସ୍ଥା — ଇତ୍ୟାଦିର ସଂଳାପ ବାସ୍ତବ ଦୃଷ୍ଟିରୁ ଅସମ୍ଭବ ମନେ ହେଲେ ମଧ୍ୟ ମାନସିକ ଓ ବୌଦ୍ଧିକ ସ୍ତରରୁ ବିଚାର କଲେ ଏହା ଅର୍ଥଯୁକ୍ତ ଓ ଭାବ ପ୍ରକାଶକ ।

ପୁଣି ପ୍ରତୀକାତ୍ମକ - 'ଆଗଘର' ଓ 'ପଛଘର' ଶବ୍ଦ ଦୁଇଟିର ଭାବଦ୍ୟୋତନା ସଂଳାପ ଭିତରେ ଯେତିକି ସ୍ପଷ୍ଟ ହୋଇଛି ମଞ୍ଚପରିକଳ୍ପନାରେ ସେତିକି ସ୍ପଷ୍ଟ ହୋଇନି । 'ପଛଘର' ଓ 'ଆଗଘର' ର ଦୃଶ୍ୟସଜ୍ଜା ମଞ୍ଚରେ ନୂତନ ନୁହେଁ, ନୂତନ ଏ ନାଟକରେ··· ··· ନାଟକର ପରିବେଶ ଭିତରେ ଗଢି ଉଠିଥିବା ଚରିତ୍ରର ସଂଳାପରେ ··· ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ନିର୍ଦ୍ଦିଷ୍ଟ ଏକ ପରିପ୍ରେକ୍ଷୀରେ ··· ଯେଉଁଠି ଚରିତ୍ରମାନେ

ଏଦ୍ୱାରା ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରନ୍ତି । ଯେମିତି ନାଟକର ଆଣ୍ଟି କ୍ଲାଇମାକ୍ସ ମୁହୂର୍ତ୍ତରେ ବର୍ଷା, ସଂବିତ୍, ଓ ସିକତା ଯଥାକ୍ରମେ "ବାପାଙ୍କୁ ନେଇ ‘ପଞ୍ଚୁଘର’କୁ ଚାଲିଯିବା", "ବାପା ତାଙ୍କ ଉଇଲରେ କ'ଣ ଏଇଆ ଲେଖି ଦେଇ ଯାଇଛନ୍ତି ?" ଏବଂ "ନଲେଖିଲେ ବି ତାଙ୍କୁ ଏଇଠି ‘ଆଗଘର’ଟାରେ ପକେଇ ଦେବା ଆଦୌ ନିରାପଦ ନୁହେଁ" କହିବା ବେଳେ ଦର୍ଶକ / ପାଠକ ନିକଟରେ ଏ ଶବ୍ଦ ଦୁଇଟିର ମୌଳିକ ତାତ୍ପର୍ଯ୍ୟ ଆପେ ଆପେ ସ୍ପଷ୍ଟ ହୋଇ ଉଠେ । ତେଣୁ ବର୍ତ୍ତମାନର ଅନ୍ୟାନ୍ୟ ପରୀକ୍ଷାମୂଳକ ନାଟକ ଭଳି ‘ଧୃତରାଷ୍ଟ୍ରର ଆଖି’ରେ ଏ ନୂତନ ପରିକଳ୍ପନା ପାଇଁ ମଞ୍ଚସଜ୍ଜା ନିମିତ୍ତ ବିସ୍ତୃତ ଏକ ଆମ୍ବ-ସଫେଇର ଆବଶ୍ୟକତା ନାହିଁ । ନାଟକଟି ଦେଖୁ ଦେଖୁ / ପଢୁ ପଢୁ ଯେ କେହି ଏହା ସ୍ପଷ୍ଟ ଭାବେ ଉପଲବ୍ଧି କରିବ ।

କଳା ଗୋଟିଏ ସାର୍ବଜନୀନ କୃତି ; ସାର୍ବଜନୀନତା ସମୟର ପରିପ୍ରେକ୍ଷୀରେ ବାସ୍ତବ ହେବା ନିତାନ୍ତ ଆବଶ୍ୟକ । ତେଣୁ ପ୍ରତ୍ୟେକ ନାଟ୍ୟକାରଙ୍କ କଳାକୃତିର ସନ୍ତାନମାନେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟକାଳର ପରିପ୍ରେକ୍ଷୀରେ ହିଁ ବାସ୍ତବ । ଏହି ନିର୍ଦ୍ଦିଷ୍ଟତାକୁ ନାଟ୍ୟକାର ସ୍ୱୀକାର କରନ୍ତି ନାହିଁ । ତେଣୁ ସେ ସୂଚନା ଦିଅନ୍ତି—ନାଟକର ଶିରୋନାମା ସହିତ ସମ୍ପୃକ୍ତ, ତାଙ୍କର-ସମୟ ପରିକଳ୍ପନାକୁ ତାଙ୍କର ନାଟକୀୟ ସମୟର ସ୍ୱରୂପ ଭାବେ । ନିର୍ଦ୍ଦିଷ୍ଟ କୌଣସି ଏକ ସ୍ତରର ଜୀବନ ଭିତରେ ଗଢି ଉଠିଥିବା ଚିନ୍ତା ଏବଂ କର୍ମ ମଧ୍ୟସ୍ଥ intervalକୁ ସମୟ ଭାବେ ଗ୍ରହଣ ନକରି ଜୀବନକୁ ଗୋଟିଏ ସାମଗ୍ରିକ ଦୃଷ୍ଟିରୁ ଦେଖିଥିବାରୁ ସେ ଭିତରେ ସମୟର ଅସ୍ତିତ୍ୱ ଏକ ଅସଂପୃକ୍ତ ଚେତନା-ପ୍ରବାହ ବୋଲି ନାଟ୍ୟକାର ଗ୍ରହଣ କରିଛନ୍ତି । ଏଣୁ ‘ଧୃତରାଷ୍ଟ୍ରର ଆଖି’ରେ ସମୟ କୌଣସି ଗୋଟିଏ ‘ବର୍ତ୍ତମାନ’ ଭିତରେ ଆବଦ୍ଧ ନ ହୋଇ ହୋଇଛି ଯେ କୌଣସି ଜୀବନର ଏକ ସାର୍ବଜନୀନ ଆବହମାନ ଧାରା । ଏଣୁ ନାଟ୍ୟକାରଙ୍କ ବିଷୟବସ୍ତୁ ଭାବେ ସାମାଜିକ ପରିବେଶ ବାସ୍ତବଧର୍ମୀ ହେଲେ ବି ତାଙ୍କ ନାଟକର ମୂଲ୍ୟାଙ୍କନ ପାଇଁ ଗୌଣ । ଏଥିରେ ଚରିତ୍ରର କୌଣସି ପ୍ରାଧାନ୍ୟ ନାହିଁ, ଅଛି ଧାରାର; ଯାହା ଗଢ଼ିଆସେ ଏବଂ ବହିଯାଏ — ସମୟ ସଂପର୍କରେ ଏହି ଭଳି ଏକ ସଂଜ୍ଞା ଓଡ଼ିଆ ନାଟକରେ ସଂପ୍ରତି ସଂପୂର୍ଣ୍ଣ ଭାବେ ନୂତନ । ଓଡ଼ିଆ ନାଟକରେ ସମୟ ସମ୍ପର୍କରେ ନାଟ୍ୟକାରମାନେ ଗୋଟିଏ ଐତିହାସିକ କିମ୍ବା ତାତ୍ତ୍ୱିକ

ସିଦ୍ଧାନ୍ତ ଦ୍ୱାରା ସିଏ ସମସ୍ୟାକୁ ଗ୍ରହଣ କରି ନେଇଥାନ୍ତି – ଏଣୁ ସମସ୍ତ ସମ୍ପର୍କରେ ସେମାନେ ଖୁବ୍ କମ୍ କହନ୍ତି । ଗତାନୁଗତିକ ଭାବେ ସମସ୍ୟାକୁ ଗୋଟିଏ ପ୍ରବହମାନଧାରା ବୋଲି ଗ୍ରହଣ ନକରି ତାର ଗତି ମଧ୍ୟରେ ବୈଚିତ୍ର୍ୟର ବିଭିନ୍ନତା ଦେଖିଛନ୍ତି — ଏହା କେତେବେଳେ ଗଡ଼ିଆସେ ଏବଂ ଏବଂ କେତେବେଳେ ବନ୍ଦଯାଏ ।

ତେଣୁ ଏହି ନାଟକର ସମସ୍ୟାଟା ଯେତେବେଳେ ନିର୍ଦ୍ଦିଷ୍ଟ ଏକ କାଳ ଭିତରେ ସ୍ଥିର ହୋଇ ରହେନି, ଅଥବା କାଳର ପ୍ରବହମାନ ଗତି ଭିତରେ ପ୍ରତ୍ୟେକ 'ଭବିଷ୍ୟତ' ଯେତେବେଳେ 'ବର୍ତ୍ତମାନ'ର ସ୍ଥାନ ଅଧିକାର କରିବେ ଏବଂ ତାଙ୍କ ପୂର୍ବରୁ ତାଙ୍କ ସ୍ଥାନରେ ଥିବା 'ବର୍ତ୍ତମାନ' ଗୁଡ଼ିକ ଯେତେବେଳେ 'ଅତୀତ' ଗର୍ଭକୁ ଠେଲି ହୋଇ ଯିବେ, ସେତେବେଳେ 'ଆଗଘରେ' ଥିବା 'ସଂତାପ' ଓ 'ସଂବିତ୍'ଙ୍କୁ 'ପଛଘର'କୁ ଠେଲିଦେଇ ଆଗାମୀ କାଳର ନୂଆ 'ସଂତାପ' ଓ 'ସଂବିତ୍' 'ଆଗଘର'କୁ ଦଖଲ କରି ବସିବେ । 'ପଛଘର'କୁ ପେଲି ହୋଇଯିବା ପରେ ଗତକାଳର 'ସଂତାପ', 'ସଂବିତ୍' ଆଗଘରେ ଥିବା 'ସଂତାପ' ଓ 'ସଂବିତ୍'ଙ୍କ ପାଇଁ 'ସୀତାନାଥ' ଭଳି ମନେ ହେବେ । ସମସ୍ୟାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସବୁ କିଛି ତ ପରିବର୍ତ୍ତିତ ହେଉଥିବ, କିନ୍ତୁ 'ଅତୀତ' 'ବର୍ତ୍ତମାନ' 'ଭବିଷ୍ୟତ' — ଏ ଶବ୍ଦର ପରିବର୍ତ୍ତନ ହେବନି । ପ୍ରତ୍ୟେକ 'ଆଗଘର' ଲୋକଙ୍କ ପାଇଁ 'ପଛଘରେ' ଗୋଟିଏ 'ସୀତାନାଥ' ବସି ପିକା ଟାଣୁଥିବ ...... ମନକୁ ମନ କ'ଣ ନାହିଁ କଣ କ'ହି ଗୁଳିଥିବ... ଆଖି ମିଟିକା ମାରି ହସି ଭୁଲିଥିବ ... । ନାଟ୍ୟକାରଙ୍କ ଦୃଷ୍ଟିରେ ସମ୍ଭବତଃ ଏଇଥିପାଇଁ ନାଟକର ଚରିତ୍ରମାନେ ଏକ ଅନାହୂତ ନିତ୍ୟପ୍ରବୃତ୍ତି - ବର୍ତ୍ତମାନରେ ନିଷ୍ପତ୍ତି ପ୍ରତୀତ ହୁଅନ୍ତି । ଓଡ଼ିଆ ନାଟକ କ୍ଷେତ୍ରରେ ଏହା ଏକ ନୂତନ ପ୍ରସ୍ତାବନା କହିଲେ ଅତିରଞ୍ଜନ ହେବନାହିଁ ।

ସେମିତି ନାଟକଟିରେ ନାଟ୍ୟକାର ଆଉ କେତୋଟି ମୌଳିକ ପରୀକ୍ଷା ମଧ୍ୟ କରିଛନ୍ତି — ଉଦାହରଣ ସ୍ୱରୂପ ନାଟକଟିରେ ସୁଆଙ୍ଗ ଶୈଳୀର ସଫଳ ପ୍ରୟୋଗ କରି ଓଡ଼ିଆ ନାଟ୍ୟ ସାହିତ୍ୟରେ ପ୍ରଥମ କରି ପାରିବାରିକ ସୁଆଙ୍ଗ ( ମାର୍ଜିତ ସଂସ୍କରଣ ) ର ସ୍ରଷ୍ଟାଭାବେ ନିଜ ଆସନ ଦୃଢ଼ କରି ପାରିଛନ୍ତି । ନାଟକର ନାମକରଣରେ ( ଧୃତରାଷ୍ଟ୍ରର ଆଖି ) ଏବଂ ଅଙ୍କ ବିଭାଜନରେ ( ବାଲ୍ୟକାଣ୍ଡ ଓ ବିଶ୍ୱରୂପ ଦର୍ଶନ ) ସାହିତ୍ୟିକ ମୂଲ୍ୟ ବଜାୟ ରହିବା

ସଙ୍ଗେ ସଙ୍ଗେ ନାଟ୍ୟକାରଙ୍କ ମୌଳିକ ଚିନ୍ତା ଓ କାବ୍ୟିକ ଅନୁଭୂତିର ବୌଦ୍ଧିକ ପରିଚୟ ମିଳୁଛି ।

ସର୍ବୋପରି ରାମାୟଣ, ମହାଭାରତ ଦେଶର ସନ୍ତାନ ମୁଖରେ ବୃଦ୍ଧ ସୀତାନାଥ ଦ୍ୱାରା ସେମାନଙ୍କ କର୍ତ୍ତବ୍ୟ ବଖାଣି ବଖାଣି ନାଟ୍ୟକାର ପରୋକ୍ଷରେ ସୂଚେଇ ଦିଅନ୍ତି, ଏ ସଂସ୍କୃତି ଚିରନ୍ତନ । ବୃଦ୍ଧ ସୀତାନାଥ ମରି ପାରେନା' — ସାଂସ୍କୃତିକ ଚିନ୍ତାଧାରାର ଯବନିକା ପଡ଼ିପାରେନା'— ସୀତାନାଥର ଚିନ୍ତାଧାରା ତଥାପି ସମସ୍ତଙ୍କୁ ପ୍ରଭାବିତ କରି ରଖେ । ଏହି ଦୃଷ୍ଟିରୁ ନାଟ୍ୟକାର କେବଳ ସ୍ରଷ୍ଟା ନୁହନ୍ତି, ସଂସ୍କୃତି ସଚେତକ ମଧ୍ୟ । ତେଣୁ 'ମୁଁ ଆମ୍ଭେ ଓ ଆମ୍ଭେମାନେ'ର ସ୍ରଷ୍ଟା ରମେଶ ପାଣିଗ୍ରାହୀଙ୍କ ଅପେକ୍ଷା 'ଧୃତରାଷ୍ଟ୍ରର ଆଖି'ର ସ୍ରଷ୍ଟା ରମେଶ ପାଣିଗ୍ରାହୀ ଓଡ଼ିଆ ନାଟ୍ୟପ୍ରେମୀ ମହଲରେ ଯେ ଅଧିକ ଆଦୃତ ହେବେ — ଆଶା କରିବା ଭୁଲ ହେବନି ।

ଅତଏବ, ଏ ନାଟକ କୋଉ 'ism''ର ଅନ୍ତର୍ଭୁକ୍ତ ହେବ ?

ମୋ ମତରେ, 'ism' ସ୍ରଷ୍ଟାକୁ ସୃଷ୍ଟି କରେନି କି ସ୍ରଷ୍ଟା 'ism' କୁ ସୃଷ୍ଟି କରେନି । ନାଟକରେ ଯେଉଁଠି ମୌଳିକତା ଦେଖା ଦେଇଛି, ମୁଁ ଭାବେ, ସ୍ରଷ୍ଟା ସେଇଠି 'ism'ର ବନ୍ଧ ଡେଇଁଛନ୍ତି । ନାଟକ ସଂପୂର୍ଣ୍ଣ ରୂପେ ହୋଇଛି ସ୍ରଷ୍ଟାର । ତେଣୁ ତାକୁ କଉଲି ନାମିତ କରାଯାଇ ପାରିବ, ସେ ନାଁ କେତେଦୂର ସର୍ବସମ୍ମତ ହେବ, ଏ କଥା ଚିନ୍ତା କଲାବେଳେ ଏଇ ଗୋଟିଏ କଥା ମନକୁ ଛୁଏଁ । ତେଣୁ କୌଣସି ନିର୍ଦ୍ଦିଷ୍ଟ 'ଇଜମ୍' ଭିତରେ ତାକୁ ଛନ୍ଦି ଦେଇ ଅଯଥା ବୁଢ଼ିଆଣୀ ଜାଲ ସୃଷ୍ଟି କରିବା ଉଚିତ୍ ନୁହେ । ଯୋଉ ରଙ୍ଗର ଚଷମା ପିନ୍ଧି ନାଟକକୁ ଦେଖିଲେ / ପଢିଲେବି ଖାଲି କଞ୍ଚା କଞ୍ଚା, ବଞ୍ଚିଥିବା ଜୀବନ ଗୁଡ଼ାଏ ଛଡ଼ା ଆଉ କିଛି ମିଳେନି । ଜୀବନ ଯେଉଁଠି ଖାଣ୍ଟି ଏବଂ ନିଚ୍ଛକ, ସେଇଠି 'ଇଜମ୍' ଖୋଜିବାକୁ ବେଳ ନାହିଁ । ସବୁ ଦର୍ଶନ, ସବୁ ଦୃଷ୍ଟିକୋଣ, ସବୁ 'ଇଜମ୍' ଜୀବନର ଅନ୍ତର୍ଗତ ।

ପରିଶେଷରେ ମୋ କଥା । ନାଟକଟିକୁ ଦେଖି ସାରିଲା ପରେ ତା' ବିଷୟରେ ଅନେକ କିଛି ଭାବୁଥିଲି ଏବଂ ସେ ଦୁର୍ବଳତା ନେଇ ନାଟକଟି ବିଷୟରେ କହି ଦେଇଥିବି ପଦେ ଅଧେ । ହଠାତ୍ ଅଧ୍ୟାପକ ବନ୍ଧୁ ପାଣିଗ୍ରାହୀ ପାଣ୍ଡୁଲିପିଟି ହାତକୁ ବଢ଼ାଇ ଦେଲେ; "ଏମିତି କହିବା ଅପେକ୍ଷା ମତାମତ

ଘଣ୍ଟାକ ଲେଖି ପକେଇଲେ ଭଲ ହୁଅନ୍ତା । ''ମନା କରି ପାରିଲିନି । ଲେଖିଲି, ତେବେ କହିରଖେ — ମୁଁ ଏକ ସଫଳ ନାଟ୍ୟ ସମୀକ୍ଷକ ନୁହେଁ କିନ୍ତୁ ନାଟକକୁ ଯେ ମୁଁ ସବୁଠୁ ବେଶୀ ଭଲପାଏ — ଏଥିରେ ସନ୍ଦେହ ନାହିଁ । ତେଣୁ ଜଣେ ନାଟ୍ୟପ୍ରେମୀ ନାଟ୍ୟ ସମୀକ୍ଷକର ଭୂମିକା ଗ୍ରହଣ କଲାବେଳେ ନାଟ୍ୟକଳାର ସ୍ରଷ୍ଟା, ଅନୁପ୍ରେମୀ ଏବଂ ସମୀକ୍ଷକଗଣ, ମୋ ପ୍ରତି କେଉଁଠି କେତେ ଦୂର ସହୃଦୟ ହେବେ ବା ନହେବେ ସେ କଥା କହିପାରୁନି । ତେବେ ସେମାନଙ୍କ ପାଇଁ ଏତିକି କହି ରଖୁଛି — ନାଟ୍ୟସମୀକ୍ଷକର ମୁଖା ପିନ୍ଧିବା ପରେ ମଧ୍ୟ ନାଟକ ପ୍ରତି ଆସକ୍ତି ମୋ ମନରୁ ଦୂରେଇ ଯାଇନି । ତଥାପି ଏ ଆଲୋଚନା ଯଦି କାହାକୁ ଯତ୍‌କିଞ୍ଚିତ ବାଟ ଦେଖାଏ, ମୋ ପରିଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ଅଧ୍ୟାପିକା ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ବ୍ରହ୍ମପୁର
ତା ୮-୭-୭୨

## ସମାଲୋଚକ ଦୃଷ୍ଟିରେ

# ଧୃତରାଷ୍ଟ୍ରର ଆଖି

ଦିନ ଥିଲା ଯେତେବେଳେ 'ଅତୀତ'କୁ ସ୍ମରଣ କରି 'ବର୍ତ୍ତମାନ' 'ଭବିଷ୍ୟତ'ର ସ୍ୱପ୍ନ ଦେଖୁଥିଲା । ମାତ୍ର ଆଜିର 'ବର୍ତ୍ତମାନ' ନିକଟରେ ଏ ସବୁ ଖାଲି କଥା ହୋଇ ପଡ଼ିଛି । ଆଜି ସ୍ୱପ୍ନ ଆସେ – ଜୀବନକୁ ଛୁଏଁ । ଆଧୁନିକ କାଳର ପ୍ରତ୍ୟେକ ସନ୍ତାପିତ ମନକୁ ( ନାଟକର "ସଂତାପ" ଚରିତ୍ର ) ନେଇ ହିଲ୍ଲୋଳିତ କରେ । 'ବର୍ତ୍ତମାନ' ରୋମାଞ୍ଚିତ ହୁଏ – ସ୍ୱପ୍ନକୁ ନେଇ 'ଭବିଷ୍ୟତ' ଆଡ଼କୁ ଚାହେଁ । 'ଭବିଷ୍ୟତ'ର ଅନିଶ୍ଚିତ ଇଲାକା ଭିତରେ ନିଜ ପାଇଁ ଏକ ସୁରମ୍ୟ ହର୍ମ୍ୟ ମଧ ଗଢିବା ପାଇଁ ବାଲି ସଂଗ୍ରହ କରେ । ବୁଝି ପାରେନା ଖାଲି ବାଲିରେ ( "ସିକତା" ଚରିତ୍ର ) ନିର୍ମିତ ଅଟ୍ଟାଳିକା କେବେ ସ୍ଥାୟୀ ନୁହେଁ; ଠିକ୍ ସେମିତି ଯୌବନ ଏଠି ଜୁଆ ଖେଳେ । ଖେଳର ପରିଣତି ସମ୍ପର୍କରେ ସେ ସଚେତନ ନୁହେଁ । ସେ କେବଳ ଏତିକି ଜାଣେ ଖେଳିବା ତାର ଧର୍ମ, ତେଣୁ ସେ ଖେଳିବ । ନିଜକୁ ନିଃଶେଷ କରି ଅସରା ପରେ ଅସରା ବର୍ଷି ଯିବ ( "ବର୍ଷା" ଚରିତ୍ର ) । ପ୍ରେମର ସେ ବାରିଧାର କାହାକୁ ( "ଯୋସେଫ୍" ଓ "ପ୍ରେମଦାଶ" ଚରିତ୍ର ) ବିକ୍ରି କରିବ କି ନାହିଁ ସେ କଥା ଅନୁଧ୍ୟାନ କରିବା ତାର କର୍ତ୍ତବ୍ୟ ନୁହେଁ ବୋଲି ସେ ଧରି ନେଇଛି । ଯଦି କେହି କେବେ ତାକୁ ଅନାଗତର ସେଇ ଅନ୍ଧାସ୍ଥ ମୂଳକ ପ୍ରତି ସଚେତନ କରିବାକୁ ଚାହେଁ; ତେବେ ସେ କହେ — "I will take my own chance" — ଲଟେରି ଉଠେଇବାକୁ ନିଜକୁ ପ୍ରସ୍ତୁତ କରେ ।

ଜଣେ ହେଲେ କେହି ଏଠି 'ଅତୀତ' ( ବୃଦ୍ଧ 'ସୀତାନାଥ' ଚରିତ୍ର ) କଥା ଚିନ୍ତା କରନ୍ତି ନାହିଁ । ଅତୀତ ଠାରୁ ଅଭିଜ୍ଞତା ଉଧାର ଆଣି 'ଭବିଷ୍ୟତ୍'

ପାଇଁ ପଥ ପ୍ରସ୍ତୁତ କରନ୍ତୁ ନାହିଁ କିନ୍ତୁ ବିଗୃହ 'ଅତୀତ' ସହିପାରେ ନାହିଁ, ସ୍ଥିର ହୋଇ ରହିପାରେ ନାହିଁ । ବହୁ କଷ୍ଟରେ ବାଡ଼ିଟିଏ ଧରି ଗ୍ରେଟେଇ ଗ୍ରେଟେଇ ଚାଲିଆସେ 'ବର୍ତ୍ତମାନ' ପାଖକୁ , 'ବର୍ତ୍ତମାନ' ଧମକ ଦିଏ; "ତମେ କାହିଁକି ଚାଲି ଆସିଲ ସେ ପଛଘରୁ ? ଅତୀତ ମନେ ମନେ ଖୁମୁର ହୁଏ — ଅନେକ ଦିନ ହେଲା ଆସି ନଥିଲି ତମର ଏ ଆଗ ଘରଟାକୁ । " ହଠାତ୍‌କ ପବିତ୍ର ("ସଂସ୍କୃତ" ଚରିତ୍ର) ସ୍ଥିତି ପ୍ରତି ସଚେତନ କରାଇ ଅତୀତକୁ କହେ " ଓଃ — ସେଇଥି ପାଇଁ ଚାଲି ଆସିଲ ? କିନ୍ତୁ ଏଇଠି ଆଖି ବୁଜି ରହିବାକୁ ହୁଏ । "

ତଥାପି 'ଅଜ୍ଞାତ' ଆଖି ଖୋଲି ସବୁ ଦେଖିବାକୁ ଚେଷ୍ଟା କରେ— ଅଯଥା ବ୍ୟସ୍ତ କରେ 'ବର୍ତ୍ତମାନ'କୁ । ଫଳରେ କ୍ଷତାକ୍ତ ହୁଏ । କାରଣ ଏଠି 'ବର୍ତ୍ତମାନ'ର ଅର୍ଥହୀନ ସଂଗ୍ରାମ ଓ ତାହାର ସମସ୍ୟା ବିଜଡ଼ିତ ଚରିତ୍ର ମାନଙ୍କ ସ୍ୱଚ୍ଛନ୍ଦ ଗତି ବ୍ୟାହତ ହେଲା ବୋଲି 'ବର୍ତ୍ତମାନ' ଅନୁଭବ କରେ ।

•

ବାସ୍ତବ ହେଉ, ଅବାସ୍ତବ ହେଉ ବା ଅତି ବାସ୍ତବ ହେଉ, ଏମିତି ଏକ ସ୍ଥିତି ( ବର୍ତ୍ତମାନ ) ଆଉ ସ୍ୱପ୍ନର ( ଭବିଷ୍ୟତ ) କୁହୁଡ଼ି ଭିତରେ ପ୍ରତ୍ୟେକ ସନ୍ତରଣ କରୁଛନ୍ତି । ସ୍ମୃତିକୁ ( ଅତୀତ ) କେହି ପଚାରୁ ନାହାନ୍ତି । ସମସ୍ତ ଅନ୍ତର୍ଦ୍ଦୃଷ୍ଟି ଥାଇ ବି ସେ ଆଜି ସ୍ଥିତି ଏବଂ ସ୍ୱପ୍ନ ନିକଟରେ ସାଜିଛି ଦୃଷ୍ଟିଶକ୍ତିହୀନ "ଧୃତରାଷ୍ଟ୍ର" । ଅପର ପକ୍ଷରେ ଏହି ସନ୍ତରଣ ମହାକାଳର ବୈତରଣୀ ନା କୁରୁକ୍ଷେତ୍ରର ଧର୍ମ ଯୁଦ୍ଧ ତାର ନିର୍ଦ୍ଦିଷ୍ଟ ସଂଜ୍ଞା ଦେବାପାଇଁ ସଂଜୟ ନାହିଁ । ତଥାପି ଧୃତରାଷ୍ଟ୍ର ପଚାରି ଚାଲିଛି "ମାମକାଃ ପାଣ୍ଡବାଶ୍ଚୈବ କିମ କୁର୍ବତ ସଂଜୟ ! " ( କିଏ ମଲା ? କୌରବ ମାନେ ? ··· ନା ··· ପାଣ୍ଡବ ମାନେ ? )

ଆଧୁନିକ ନାଟକର ପୃଷ୍ଠଭୂମିରେ ସମସ୍ୟା – ବହୁଳ ଏଇ ନାଟକ ନାଟ୍ୟକାର ରମେଶ ପ୍ରସାଦ ପାଣିଗ୍ରାହୀଙ୍କ ବହୁ ପ୍ରତୀକ୍ଷିତ ପ୍ରୟୋଗବାଦୀ କଳାକୃତି । ଅତୀତ ଠାରୁ ଗଡ଼ି ଆସି ଭବିଷ୍ୟତ ପର୍ଯ୍ୟନ୍ତ ବହି ଯାଇଥିବା ସମୟର ସ୍ରୋତରେ ତାଙ୍କର ନିଷ୍ଠରିତ ଚରିତ୍ର ଗୁଡ଼ିକୁ ନେଇ ପେଶ୍ କରୁଛନ୍ତି ଏଇ ନାଟକ । ଓଡ଼ିଆ ନାଟ୍ୟ ପରମ୍ପରା ପରିପ୍ରେକ୍ଷୀରେ ଏବଂ ତାହାର

ପ୍ରସ୍ତାବନା ଦୃଷ୍ଟିରୁ ଏହି ନାଟକ ସଂପୂର୍ଣ୍ଣ ମୌଳିକ । ଆଧୁନିକ ଜୀବନର ଯେ କୌଣସି ନୂତନ ପରୀକ୍ଷାର ପାଇଁ ଏହା ଏକ 'ସୁଆଙ୍ଗ' । ଏହି ନାଟକରେ ଯେଉଁ ପୃଥିବୀର ଦୃଶ୍ୟ ଦେଖାଯାଏ ତାହା ଏକ ଅନ୍ଧ ଦିଗନ୍ତର ଦ୍ଵା - ହୁତାଶ ଏବଂ ଏକ ଅନୁପସ୍ଥିତ କାଳ ଓ ଚରିତ୍ରର କୁଶୀଲବ । "ମୁଁ ଆମ୍ଭେ ଓ ଆମ୍ଭେମାନେ" ଓ ବେତାର ନାଟକ "ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ" ପରେ ଏହା ହେଉଛି ନାଟ୍ୟକାରଙ୍କ ଅନ୍ୟ ଏକ ଉଜ୍ଜ୍ୱଳ ସୃଷ୍ଟି, ଯାହା ଓଡ଼ିଶାର ରଙ୍ଗମଞ୍ଚ ଇତିହାସରେ ନିଶ୍ଚିତଭାବେ ଅନ୍ୟ ଏକ ଅଗ୍ରଗାମୀ ।

ନାଟକଟିକୁ ଦେଖି ସାରିବା ପରେ ମନେ ହୁଏ ନିର୍ଦ୍ଦିଷ୍ଟ ଏକ କାଳ ପାଇଁ ରଚିତ । ସବୁ ସମୟର "ସବୁ ବର୍ତ୍ତମାନ" ପାଇଁ ଏହା ଆଦୌ ପ୍ରଯୁଜ୍ୟ ନୁହେ । ପୁଣି ଚରିତ୍ର ଗୁଡ଼ିକ "ଅଚରିତ୍ର" ନୁହନ୍ତି, ନିର୍ଦ୍ଦିଷ୍ଟ ଏକ ବର୍ତ୍ତମାନ ଭିତରେ ସେମାନଙ୍କ ସ୍ୱୀକୃତି ଗ୍ରହଣୀୟତା ସୁସ୍ପଷ୍ଟ । ସଂଳାପ ଚରିତ୍ର ମୁଖୀ ଓ ଆଧୁନିକ ନାଟକୋପଯୋଗୀ । ସମୟେ ସମୟେ ସଂଳାପ ଗୁଡ଼ିକ କାବ୍ୟିକ ହୋଇଥିବାରୁ ତାହା ପ୍ରାଣକୁ ଛୁଏଁ । ଅନ୍ୟ ସମୟରେ ଏହା " ମନୋସିଲିବୋଲିକ୍ " । ତେଣୁ ଦର୍ଶକ ତାହା ଗ୍ରହଣ କରିବାକୁ ସମର୍ଥ ହୁଏ ।

● [ ପ୍ରଜାତନ୍ତ୍ର ତା ୧୪ - ୫ - ୧୯୭୬ ]

ଅତୀତ, ଓ ବର୍ତ୍ତମାନ ଭବିଷ୍ୟତକୁ ଏକ ସରଳ ରେଖାରେ ସଂଯୋଗ କରି ସେଥିରେ ସନ୍ତାପିତ ମନକୁ ନେଇ ବାଲିର ଅଟ୍ଟାଳିକା ନିର୍ମାଣ କରିବାର ପ୍ରୟାସ୍ ନାଟ୍ୟକାର ଏଥିରେ କରିଛନ୍ତି । 'ସଂତାପ' ଓ 'ସିକତା' ଚରିତ୍ର ଏହାର ବାସ୍ତବ ପ୍ରତିବିମ୍ବ । ପ୍ରତ୍ୟେକଟି ଚରିତ୍ର ଅତ୍ୟନ୍ତ ପ୍ରତୀକ ଧର୍ମୀ । ସମଗ୍ର ପରିବେଶ ସଂପୂର୍ଣ୍ଣ ମନସ୍ତାତ୍ତ୍ୱିକ ଏବଂ ବିଷୟବସ୍ତୁଟି ନୂତନ ପ୍ରୟୋଗବାଦୀ । ସେହି ଦୃଷ୍ଟିରୁ ନାଟକଟି ଉଚ୍ଚ କୋଟୀର ହୋଇ ପାରିଛି ।

ପୁନଶ୍ଚ ବାସ୍ତବ, ଅବାସ୍ତବ ତଥା ଅତିବାସ୍ତବ ସେ ଯାହା ହେଉନା କାହିଁକି ଏକ ସ୍ଥିତି ( ବର୍ତ୍ତମାନ ) ଏବଂ ସ୍ୱପ୍ନର ( ଭବିଷ୍ୟତ ) ଘନ କୁହେଳୀ ମଧ୍ୟରେ ସମସ୍ତେ ସନ୍ତରଣ କରୁଛନ୍ତି । ସ୍ମୃତି କୁ ( ଅତୀତ ) ବିସ୍ମୃତିର ଗର୍ଭକୁ ଠେଲି ଦେଇଛନ୍ତି । ସମସ୍ତ ଅନ୍ତର୍ଦୃଷ୍ଟି ଥାଇ ମଧ୍ୟ ପ୍ରତ୍ୟେକ ଆଜି ସ୍ଥିତି ଓ ସ୍ୱପ୍ନ ନିକଟରେ ସାଜିଛନ୍ତି ଦୃଷ୍ଟିଶକ୍ତିହୀନ ଧୃତରାଷ୍ଟ୍ର । କିନ୍ତୁ ଆଜି ମହାଭାରତର ସଂଜ୍ଞା ନିରୂପଣ କରିବାକୁ ସଂଜୟ ନାହିଁ । ତଥାପି ଧୃତରାଷ୍ଟ୍ର ପଚାରି ଚାଲିଛନ୍ତି — "କିଏ ମଲା ? କୌରବ ନା ପାଣ୍ଡବ ।"

ଆଜିର ଜୀବନର ଜଟିଳତାର ଯନ୍ତ୍ରଣା ମଧ୍ୟରେ ସମସ୍ତ ଚରିତ୍ର ଏକ ଏକ ନିଷ୍ଟରିତ । ନାଟକର ସୃଷ୍ଟି ଓ ସ୍ୱାକ୍ଷର ଯେପରି ନୂତନ ଓ ମୌଳିକ କୃତୀ, ଠିକ୍ ସେହିପରି ପ୍ରସ୍ତାବନା ଓ ପ୍ରଯୋଜନା ମଧ୍ୟ ଓଡ଼ିଆ ନାଟ୍ୟ ଜଗତରେ ଏକ ମାଇଲ୍ ଖୁଣ୍ଟି । ସଂଳାପ, ଚରିତ୍ର, ପରିବେଶ, ବିଷୟ ବସ୍ତୁ, ସର୍ବୋପରି ପରିକଳ୍ପନା ପ୍ରତ୍ୟେକ କ୍ଷେତ୍ରରେ ନାଟ୍ୟକାର ପାଣିଗ୍ରାହୀଙ୍କ ନିଜସ୍ୱ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି । ବିଶେଷତଃ ସଂଳାପ ଗୁଡ଼ିକରେ କାବ୍ୟିକତାର କଳା ରୂପାୟିତ ହୋଇଥିବାରୁ ତାହା ବେଶ୍ ରୁଚି ପୂର୍ଣ୍ଣ ହୋଇ ପାରିଛି । ସଂଳାପ ଗୁଡ଼ିକ ମଧ୍ୟ ଖୁବ୍ ସଂକ୍ଷିପ୍ତ, ଅଥଚ ତାର ଭାବ ଖୁବ୍ ବ୍ୟାପ୍ତ ।

● [ମାତୃଭୂମି, ତା ୨୪ । ୫ । ୭୨]

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ବିଭାଗ
ନାଟ୍ୟ ସଂସଦର ଚତୁର୍ଥ ଅବଦାନ

ତା ୩୧-୩-୭୨

ଭୂମିକାରେ :

| | | |
|---|---|---|
| ଶ୍ରୀଜାନାଥ | : | କେଳୁ ଚରଣ ସାମନ୍ତରାୟ |
| ସୁବ୍ରତ | : | ସୁରେନ୍ଦ୍ର ନାଥ ମିଶ୍ର |
| ପ୍ରତାପ | : | ହରିନାଥ ଦାଶ |
| କୋପେଙ୍କ | : | ବୀରେନ୍ଦ୍ର କୁମାର ଦାସ |
| ପ୍ରେମଦତ୍ତ | : | ସତ୍ୟ ପ୍ରକାଶ ପଣ୍ଡା |
| ସିକତା | : | ଆହ୍ଲାଦିନୀ କର |
| ବର୍ଷା | | ପ୍ରଭାତୀ ମିଶ୍ର । |

ନିର୍ଦ୍ଦେଶନା

ଡାକ୍ତର ସୁବୋଧ ପଟ୍ଟନାୟକ

ମଞ୍ଚ ପରିଚାଳନା

ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ
ଡ଼ା : ରବୀନ୍ଦ୍ର ପ୍ରସାଦ ମହାନ୍ତି

ମଞ୍ଚ ସଜ୍ଜା ଓ
ଆଲୋକ ସମ୍ପାତ — କେଦାର ଆଚାର୍ଯ୍ୟ

ସ୍ମାରକ

ଶାନ୍ତନୁ ସ୍ୱାଇଁ
ପ୍ରଫୁଲ୍ଲ ନନ୍ଦ
ରମେଶ ପାଢ଼ୀ

ଉପଦେଷ୍ଟା

ଡ଼ଃ ହରିହର ପଟ୍ଟନାୟକ
ଡ଼ଃ ବେଣୀମାଧବ ପାଢ଼ି
ଅଧ୍ୟାପକ ସୀତାରାମ ମହାପାତ୍ର

ପ୍ରଯୋଜନା

ନିହାର ଚନ୍ଦ୍ର ପଟ୍ଟନାୟକ
ବାଣୀ କୁମାର ପାଣିଗ୍ରାହୀ ।



# କୋରାସ୍

ଆଇ. ଏ. ଏସ୍. ମାନଙ୍କ ସ୍ତ୍ରୀ ଭଳି ସ୍ତ୍ରୀ ଟିଏ ଖୋଜୁଥିବା ପ୍ରେମଦତ୍ତର 'ନ' ନମ୍ବର ଫ୍ଲାଟ୍ ମାନଙ୍କୁ ··· ···

କମ୍ବା,

ଟାଉନ୍ ବସ୍‌ରେ ପ୍ରେମ କରୁଥିବା ଜୋସେଫ୍ ଓ ବର୍ଷାର 'ଲଭ୍ ଲେଟର୍' ମାନଙ୍କୁ ··· ···

ନ ହେଲେ,

ରେଭେନସା କଲେଜର ଏକଦା - ପ୍ରେସିଡେଣ୍ଟ୍, ସେକ୍ରେଟେରିଏଟ୍‌ର ବର୍ତ୍ତମାନ - ଷ୍ଟେନୋ ସଂତାପ ମହାନ୍ତିଙ୍କ ସସ୍‌ପେନ୍‌ସନ୍ ଅର୍ଡର ମାନଙ୍କୁ ···

ଅଥବା,

ପିଲାଦିନେ ଆଲ୍‌ଫା ସାଙ୍ଗରେ ଖେଳୁଥିବା ( ଆଲ୍‌ଫା ତାଙ୍କ ଡ଼ଗ୍‌ର ନାଁ ) ସିନସ୍କର୍ କେମ୍ବ୍ରିଜ୍‌ର ଏକଦା ଗ୍ଲୁଣୀ, ଜ. ବ. ଏସ୍‌ଙ୍କ 'କ୍ୟାଂଷ୍ଟଡ଼ା' ର ନାୟିକା ଏବଂ ସଂତାପ ମହାନ୍ତିଙ୍କ ଟିକିଏ ଛୁଆଁରେ ଗରମ ହୋଇ ଉଠୁଥିବା - ସିକତା - ହାତର ରୁଟି ଓ ଡ଼ାଲମା ମାନଙ୍କୁ ··· ···

ନଚେତ୍,

ଆକ୍‌ଟିଂ କରି ଗୃହ ଘୃଣ ବର୍ଷେ ବି. ଏ. ଫେଲ୍ କରିଥିବା ଏବଂ ମାଷ୍ଟର କ୍ୟାଣ୍ଟିନ୍ ଛୁଟକରୁ ବମ୍ବେ ପର୍ଯ୍ୟନ୍ତ ଲଂବ ଯାଇଥିବା ସଂବତ୍ସର ଝିଅ ମାନଙ୍କ ପାଇଁ ଉଦ୍ଦିଷ୍ଟ ହ୍ଵଇସିଲ୍ ମାନଙ୍କୁ ···

କିଛି ନ ହେଲେ, ଶେଷରେ —

ପରମ ପୂଜନୀୟ କୁଳବୃଦ୍ଧ ସୀତାନାଥଙ୍କ ପିକା ମାନଙ୍କୁ ।



# ବାଲ୍ୟକାଂଡ



[ ଏ ନାଟକର କାହାଣୀ ଭାରତର ଯେ କୌଣସି ସହରର ଘଟଣା ହୋଇପାରେ । କିଂତୁ ପାଠକ, ଦର୍ଶକଂକର ସୁବିଧା ପାଇଁ ଧରି ନିଆଯାଉ ସହରର ନାମ ଭୁବନେଶ୍ୱର, ଓ—ଆର୍ ଭଳି କ୍ୱାର୍ଟରସ୍‌ର ପ୍ରଥମ ଘରଟା କେବଳ ଦେଖା-ଯାଉଛି । ଏକ ନିମ୍ନ ମଧ୍ୟବିତ୍ତ ପରିବାର । କିଂତୁ ଘରର ଆର୍ଥିକ ଅବସ୍ଥା ଏଇ ଡ୍ରଇଂ ରୁମ୍‌କୁ ଦେଖି ଆଦୌ ଅନୁମାନ କରାଯାଇ ପାରିବନି ।

କମ୍ ଦରର ଏକ ସୋଫା ସେଟ୍ । ଗୋଟାଏ କୋଣରେ ତିନି କୋଣିଆ ଲମ୍ବା ଷ୍ଟୁଲ୍ ଉପରେ ରେଡ଼ିଓ ଖଣ୍ଡେ । ଟେବୁଲ ଉପରେ ଚିହ୍ନିତ ମଲାଟ ଥିବା କେତୋଟି ଇଂରାଜୀ ବହି । ସମ୍ଭବତଃ ଉପନ୍ୟାସ; ଏବଂ ଖଣ୍ଡେ ସସ୍ତା ଅଥଚ ରଂଗୀନ୍ ଟେବୁଲ୍ କ୍ଲଥ୍ । ସୋଫା ସାମନା ଟି-ପୟ ଉପରେ ଅବିନ୍ୟସ୍ତ କେତୋଟି 'ଫିଲ୍ମ ଫେୟାର୍', ଷ୍ଟାର୍ ଆଣ୍ଡ୍ ଷ୍ଟାଇଲ୍ କିଂବା 'ମମତା' ଭଳି ମାଗାଜିନ୍ ଏବଂ ଗୋଟାଏ ଫୁଲ୍‌ଦାନୀରେ ପ୍ଲାଷ୍ଟିକ୍ ଫୁଲ୍ । କାଂଥରେ ଗୋଟାଏ ବଡ଼ ଆଇନା ଏବଂ କ୍ୟାଲେଣ୍ଡରର ଜାଗାସ୍ତୁ ଫଟୋ କେତେଖଣ୍ଡି । ସୁବିଧା ହେଲେ ଖଣ୍ଡେ ସତ୍ୟସାଇ ବାବାଙ୍କ

ଫଟୋ ଏବଂ "God is Good", "Happy Déams" ଏମ୍ଭ୍ରସ୍ତ ଦ୍ଧେଷ୍ଟ ଟଙ୍ଗା ଯାଇ ପାରେ । ଟେବୁଲ ପାଖକୁ ଲଗି ବେତ ଚେୟାର ଦ'ଖଣ୍ଡ । ସୋଫାଟି ପ୍ରାୟ ମଝିର ମଧ୍ୟ ଭାଗରେ । ପଛପଟେ ଟେବୁଲ କ୍ଲଥ୍ ରଂଗର ପରଦା; ଅର୍ଥାତ୍ ସେଇଠି ଗୋଟାଏ ଦୁଆର ଅଛୁ, ସେକ୍ଷେଇ ଘର ବାରଣ୍ଡାକୁ ଯିବାପାଇଁ । ଝରକା ଦେଇ ସଂଧ୍ୟାର ଅକାଶ ଦେଖା ଯାଇପାରେ । କାଂଥ୍ର ଆକାଶ ଆଗକୁ ଜଣେ ବୃଦ୍ଧଙ୍କର ମୁହଁର କସ୍ୱଦଂଶ ଦେଖା ଯାଉଛୁ । ସେ ପୂର୍ଣ୍ଣ ଯୋଗ ସାଧନା କଲଭଳି ପିକା ଟାଣୁଛଂନ୍ତ । ଝରକା ପଛପଟଟା ସେଥିପାଇଁ ବେଶୀ ସମସ୍ତ ଦାର୍ଜିଲଂର କୁହୁଡ଼ି ଭଳି ଦେଖାଯାଏ । ବୃଦ୍ଧଙ୍କ ନାମ ସୀତାନାଥ, ଏ ଗୃହର ବୟୋଜ୍ୟେଷ୍ଠ ପୁରୁଷ । ତେଣୁ ତାଂକୁ ଗୃହକର୍ତ୍ତା କୁହାଯାଇ ପାରେ ।

ବର୍ତ୍ତମାନ ସଂଧ୍ୟା । ଅନେକରକୁ ପାଞ୍ଚଟା ବାଜି ତଣଶ୍ ମିନଟ୍ । ବାମପଟ ଘରୁ ଜଣେ ଯୁବକ ଆସି (ତାଂକ ନାମ ସଂବତ୍) ରେଡ଼ିଓଟା ଖୋଲି ଦେଇଗଲେ । ପ୍ରାୟ ଏକ ମିନଟ୍ ଭିତରେ ବାହାରୁ ପ୍ରବେଶ କଲେ ଜଣେ ଭଦ୍ର ମହିଳା । କ୍ଳାନ୍ତ ମୁହଁ । ତରୁଣୀ, ମୁହଁରେ ଦିଆଯାଇଥିବା ମୋଟା ପ୍ରଲେପ ଫିକା ପଡ଼ିଛୁ । ସେ ପ୍ରବେଶ କରି ମନିବ୍ୟାଗ୍‌ଟା ସୋଫା ଉପରକୁ ପ୍ରାୟ ଫୋପାଡ଼ି ଦେଲେ ବୋଲି କୁହାଯିବ, ଏବଂ ଯାଇ ଆଇନା ଆଗରେ ଠିଆ ହେଲେ । ଚେହେରାଟା କେତେ ଫିକା ପଡ଼ିଛି ପରୀକ୍ଷା କରୁ କରୁ ବାହାରେ କାହାର ପାଦଶବ୍ଦ ଶୁଣି ସେଇଆଡ଼କୁ ଚାହିଁଲେ, ପୁଣି ନିଜକୁ

ଦେଖିବାରେ ବ୍ୟସ୍ତ ରହିଲେ । ଦୁଇ ସେକେଣ୍ଡ ପରେ ଟିକିଏ ବାମ ପଟ ଦୁଆର ଆଡ଼କୁ ଦେଖି ଦେଖି କହିବା ଆରମ୍ଭ କଲେ ।

ଭୁଲି ଯାଇଥିଲି, ତରୁଣୀଙ୍କ ନାମ ସିକତା, ଏ ଘରର ବୋହୂ ବୋଲି ତାଙ୍କୁ କୁହାଯିବା ଉଚିତ । କାରଣ ସେ ସୀତାନାଥଙ୍କ ବଡ଼ ପୁଅ ସଂତାପକୁ ଦୁଇବର୍ଷ ତଳେ କୋର୍ଟରେ ବିବାହ କରିଥିଲେ । ତାକୁ ଏକ ପ୍ରକାର ଗାନ୍ଧର୍ବ ବିବାହ କୁହାଯାଇ ପାରେ ।

ବର୍ତ୍ତମାନ ପ୍ରଥମ ଶବ୍ଦଟି ତାଂକ କଂଠରୁ ବାହାରିଲା ]

ସିକତା ।। କିଏ ? (ଟିକିଏ ଆଗେଇ ଯାଇ) କିଏ ? ଭିତରକୁ ଆସନ୍ତୁ ।

[ ନିମନ୍ତ୍ରଣ ରକ୍ଷା କରି ଯିଏ ଭିତରକୁ ପ୍ରବେଶ କଲେ ତାଙ୍କ ନାମ ଜୋସେଫ୍, ଯୁବକ, ସୁନ୍ଦର ଚେହେରା । କନ୍‌ଭେଣ୍ଟ ପଢ଼ାର ଫର୍ମା ପଣ ଅଙ୍ଗଭଙ୍ଗୀ ଓ କଥାରେ ସ୍ପଷ୍ଟ, ମୁହଁରେ ଫ୍ରେଞ୍ଚ୍ କଟ୍ ଦାଢି ]

ଜୋସେଫ ।। (ପ୍ରବେଶ କରି) ନା··· ମାନେ···

ସିକତା ।। ଆପଣ କାହାକୁ ଖୋଜୁଛନ୍ତି ବୋଧହୁଏ !

ଜୋସେଫ ।। (ଅପ୍ରସ୍ତୁତ ଜଣାଗଲେ) ନା··· ମାନେ···

ସିକତା ।। (ଟିକିଏ ବଙ୍କ ଭାବରେ ଗ୍ରୀବା) ବର୍ଷାକୁ ଖୋଜୁଛନ୍ତି ?

ଜୋସେଫ ।। (ହସିଲା ଭଳି) ଆପଣ କେମିତି ଜାଣିଲେ ?

ସିକତା ।। (ରେଡ଼ିଓ ଶବ୍ଦ କମାଇ ଦେଇ) ଆପଣ ଜୋସେଫ ମହାପାତ୍ର ନିଶ୍ଚୟ !

ଜୋସେଫ ।। (ଆଶ୍ଚର୍ଯ୍ୟ ହୋଇ) ହଁ··· କିନ୍ତୁ ଆପଣ କେମିତି ଜାଣିଲେ ?

ସିକତା ।। ଅନେକ କଥା ଏମିତି ଜାଣିବାକୁ ହୁଏ ।

।। ତିନି ।।

ଜୋସେଫ ॥ ଆପଣଙ୍କ ସ୍ବାମୀଙ୍କର କେଉଁଠି···

ସିକତା ॥ ଦ୍ୟାଟ୍‌ସ ଅଲ ରାଇଟ୍ । ବର୍ତ୍ତମାନ ତ ଦେଖିଲେ !

ଜୋସେଫ ॥ ତା'ମାନେ··· ପାଞ୍ଚ ମିନଟ୍ ତଳେ ଯୋଉ ଶକ୍‌ସାଟା ଏଇ ଘର ଆଗରେ ଅଟକି ଥିଲା··· ସେଇଟାରେ ଆପଣ···

ସିକତା ॥ ହଁ, ଅଫିସରୁ ଫେରିଲି । ଆପଣ ଏମିତି ଅନ୍‌ଇଜି ଫିଲ୍ କରୁଛନ୍ତି କାହିଁକି ? ବସିବାରେ କିଛି ଆପତ୍ତି ଅଛି ?

ଜୋସେଫ ॥ କ୍ଷମା କରିବେ, ମୁଁ ଆପଣଙ୍କ ବର୍ଷା ଭାବି···

ସିକତା ॥ ମୁଁ ବର୍ଷାର ଭାଉଜ । ସିକତା ଦାସ, ବର୍ତ୍ତମାନ ସିକତା ମହାନ୍ତି ।

ଜୋସେଫ ॥ (ହଠାତ୍ ଏକ ଡ୍ରଇଁ-ରୁମ୍ ମ୍ୟାନର୍ ମନେ ପଡ଼ିଗଲା ପରି) ନମସ୍କାର !

ସିକତା ॥ ନମସ୍କାର । ଛିଃ ! ମୁଁ ଆପଣଂକଠୁ ଶ୍ରେଷ୍ଠ ହେବି, ମତେ ନମସ୍କାର କଲେ ?

ଜୋସେଫ ॥ ଯେତେହେଲେ ଆପଣ ବର୍ଷାର ଭାଉଜ ।

ସିକତା ॥ ଆପଣ ବସିଲେନି ଯେ ? (ସ୍ୱର ବଦଳାଇ) ଓ··· ଗରିବ ଘରର ଏ ସୋଫାଟାରେ ବସିଲେ ଜାମା ମଇଳା ହେଇଯିବ ବୋଧହୁଏ ?

ଜୋସେଫ ॥ (ବସିଲା ପରେ) ବର୍ଷା ନାହିଁ ?

ସିକତା ॥ (ଘଡ଼ି ଦେଖି) ଉଁ ? (ଥରେ ଘଡ଼ିକୁ ଏବଂ ଥରେ ଜୋସେଫକୁ ଚାହିଁ) ପାଞ୍ଚଟା ଚାଳିଶ୍···

ଜୋସେଫ ॥ ମୁଁ ତାକୁ ଆପଏଣ୍ଟ୍‌ମେଣ୍ଟ୍ ଦେଇଥିଲି ।

ସିକତା ॥ ଆପଣ ଟିକିଏ ଜଲଦି ଚାଲି ଆସିଲେ ବୋଧହୁଏ ?

ଜୋସେଫ ॥ ନା, ଅନ୍ତତଃ ସମୟ ମୋର ଭୁଲ ହୁଏନି ।

ସିକତା ॥ ସେଥିରେ କିଛି ଯାଏ ଆସେନି । ଏମିତି ପ୍ରତୀକ୍ଷା କରିବାରେ ମଧ୍ୟ ଅଦ୍ଭୁତ ଆନନ୍ଦ ମିଳେ ।

ଜୋସେଫ ॥ ନା, ବର୍ଷା ମୋର କ୍ଲାସମେଟ୍ ଥିଲା । କିନ୍ତୁ ମଝିରେ ଫେଲ ହୋଇ…

ସିକତା ॥ ବର୍ତ୍ତମାନ କ'ଣ କରୁଛନ୍ତି ?

ଜୋସେଫ ॥ ଷ୍ଟେଟ୍‌ବ୍ୟାଙ୍କ୍ ପ୍ରୋବେସନାରୀ ଅଫିସର୍ କରୁଛି ।

ସିକତା ॥ ଓ୍ୱିସ୍ ୟୁ ଗୁଡ୍ ଲକ୍ ।

ଜୋସେଫ ॥ ମୁଁ ବି ଆଶା କରୁଛି… (ଠିଆ ହୋଇ) ଆଚ୍ଛା ମୁଁ ତା'ହେଲେ ଆସୁଛି ।

ସିକତା ॥ କାହିଁକି ? ମୋ' ସାଙ୍ଗରେ କଥାହେଲେ ବୋର୍ ଲାଗୁଚି ବୋଧହୁଏ ?

ଜୋସେଫ ॥ ନା—ନା, ଆଦୌ ନୁହେଁ । ବରଂ ଆପଣଙ୍କ ସଙ୍ଗେ ଘଣ୍ଟା ଘଣ୍ଟା ଆଳାପ କରିଯାଇ ପାରେ ।

ସିକତା ॥ (ହଠାତ୍ ଖୁସି ହେଲା ଭଳି) ଆପଣ ଆଇ.ଏ.ଏସ୍. ଦେଲେନି ଜୋସେଫ ବାବୁ ?

ଜୋସେଫ ॥ ଦରମା କମ୍ ! ଝାମେଲା ବେଶୀ । ତା'ଛଡ଼ା ଡ଼ି.ସି.ଏମ୍ ରେ ଚାକିରିଟେ ପାଉଛି । ଦିଲ୍ଲୀ ଯିବାର ଅଛି ଏ ଭିତରେ । ଦେଖାଯାଉ ଯଦି ମନ ଲାଗିଯାଏ… ଯା'ହେଲେ ସେ ଚାକିରିଟା ବି ମନ୍ଦ ନୁହେଁ ।

ସିକତା ॥ ଆପଣ ସୁନ୍ଦର । ଡ଼ି.ସି.ଏମ୍. ପାଇଁ ସୁନ୍ଦର ଚେହେରା ଦରକାର ।

ଜୋସେଫ ॥ ଦିଲ୍ଲୀ ଗଲାପରେ ଜଣା ପଡ଼ିବ ।

ସିକତା ॥ ଦିଲ୍ଲୀ ଏଇ ପ୍ରଥମଥର ଯାଉଛନ୍ତି…ନା ଆଗରୁ କେବେ…?

ଜୋସେଫ ॥ ନା—ନା, ବାପାଙ୍କ ସାଙ୍ଗରେ ଅନେକ ଥର ଯାଇଛି… ତା'ଛଡ଼ା ମୁଁ ସିନିୟର୍ କ୍ୟାମ୍ବ୍ରିଜ୍‌ଟା ସେଇଠୁ କରିଛି, ଜେଭିଅର୍ ବମ୍ବେ ! (ହସିଲା)

ସିକତା ॥ ସିନିୟର୍ କ୍ୟାମ୍ବ୍ରିଜ୍ ପରେ ମୁଁ ବି ଭାବିଥିଲି ଜୀବନରେ କିଛି ଗୋଟାଏ ହେବା ପାଇଁ… (ଦୀର୍ଘଶ୍ୱାସ) କିଛି ହୋଇ ପାରିଲି ନାହିଁ ।

॥ ପାଞ୍ଚ ॥

ଜୋସେଫ ॥ ଆପଣ କୋଉଠି ବ୍ୟବସାୟ କରୁଛନ୍ତି ?

ସିକତା ॥ ଗ୍ରାଜୁଏଟ୍, ମୁଁ ସେଇଥି ପାଇଁ ଲଜ୍ଜିତା ।

ଜୋସେଫ ॥ ନା—ନା, ସେଥିରେ କ'ଣ ଅଛି ? ଭାରତରେ ଅନ୍ତତଃ ଆମେ "ଡ଼ିଗ୍‌ନିଟୀ ଅଫ୍ ଲେବର୍" ଠିକକ ବୁଝିବା କଥା ।

ସିକତା ॥ ସେକ୍ରେଟାରିଏଟ୍‌ରେ ଷ୍ଟେନୋ,

ଜୋସେଫ ॥ ଜାକୋବ ମହାପାତ୍ରଙ୍କୁ ଜାଣିଛନ୍ତି ? ଡେପୁଟୀ ସେକ୍ରେଟାରି ?

ସିକତା ॥ ମୁଁ ତ ତାଙ୍କର ଡ଼ିପାର୍ଟମେଣ୍ଟ୍ ।

ଜୋସେଫ ॥ ସେ ମୋ ଡ଼ାଡ଼ି ।

ସିକତା ॥ ତା'ମାନେ··· ଆପଣ··· ଆଜି ଆମ ଘରେ ପାଦଧୂଳି ଦେଇ ଆମକୁ ଧନ୍ୟ କରିଛନ୍ତି ।

ଜୋସେଫ ॥ ରିଅଲି ଆଇ ଆମ୍ ଫ୍ଲାଟରଡ୍ । ଆପଣ ମଣିଷକୁ ନେଇ ଏତେ ଉଚ୍ଚରେ ବସେଇଲେଣି··· କୋଉଦିନ କଣ୍ଟ୍ରାଡ଼ି ଦେବେ ଜଣାପଡୁଚି !

ସିକତା ॥ ଓ ! ନୋ' ! ଆଇ ଆମ୍ ଦ୍ୟାଟ୍ ମଚ୍ କମ୍ପ୍ଲିମେଣ୍ଟ୍ !

ଜୋସେଫ ॥ ଥ୍ୟାଂକ୍ ୟୁ । ଆପଣ ତା'ହେଲେ ବେଳେ ବେଳେ ଆମ ଘରକୁ ଆସୁଥିବେ ! ମୁଁ କେବେ ଦେଖିନଥ !

ସିକତା ॥ ନା, ଅନ୍‌ଫର୍‌ଚ୍ୟୁନେଟ୍‌ଲି···

ଜୋସେଫ ॥ ସେଇଥିପାଇଁ । ନହେଲେ··· ବାପାଙ୍କ ଷ୍ଟେନୋମାନଙ୍କୁ ମୁଁ ପ୍ରାୟ ଚହ୍ନେ··· ।

ସିକତା ॥ ଆପଣ ଦିଲ୍ଲୀ କେବେ ଯାଉଛନ୍ତି ?

ଜୋସେଫ ॥ ଗୋଟାଏ ଓ୍ୱିକ୍ ଭିତରେ ଯାଇପାରେ ।

ସିକତା ॥ ଦିଲ୍ଲୀ କେମିତି ସହର ?

ଜୋସେଫ ॥ ବିଉଟିଫୁଲ୍ । ଦିଲ୍ଲୀକୁ ଦେଖିଲେ ଗୋଟାଏ ପାଶ୍ଚାତ୍ୟ ସହର ମନେ ପଡ଼ିବ । କଂପ୍ଲିଟ୍‌ଲି ଓ୍ୱେଷ୍ଟରନାଇଜଡ୍ !

ସିକତା ॥ ମୁଁ କେବେ ଦିଲ୍ଲୀ ଯାଇନି । ସେ ସହରଟା ପ୍ରତି ମୋର ଗୋଟାଏ ଆକର୍ଷଣ ଆସି ଯାଇଛି ।

ଜୋସେଫ ।। ଆଇ ସି ।

ସିକତା ।। ଆପଣ ବ୍ୟାଙ୍କ୍ ଷ୍ଟ୍ରେକସିଙ୍ଗ୍ ନ ପାଆନ୍ତି କେମିତି !

ଜୋସେଫ ।। କାଲି ଏଇ ଟିକେକ ତଳେ ଆପଣ ଗୁଡ୍ ଓ୍ୱିସେସ୍ ଦେଉଥିଲେ ।

ସିକତା ।। (ହସି) ଆପଣ ଡ଼.ସି.ଏମ୍. ରେ ରହୁଛନ୍ତି ବୋଲି ମୁଁ ଗୃହେଁ ।

ଜୋସେଫ ।। ଓଃ ! (ହସିଛି । ଖୁବ୍ ଜୋର୍‌ରେ)

ସିକତା ।। ଜୋସେଫ ବାବୁ !

ଜୋସେଫ ।। ଆଜ୍ଞା !

ସିକତା ।। ମତେ ଗୋଟାଏ 'ଆଜ୍ଞା' କ'ଣ କହୁଛନ୍ତି ମ ? ସେତେବେଳେ ସେମିତି ନମସ୍କାର କରି ପକେଇଲେ । ମତେ ଲାଗିଲା ସତେ ଯେମିତି ମୁଁ ସ୍କୁଲର ମ୍ୟାଡାମ୍ ଥିଲି !

ଜୋସେଫ ।। ବୁଦ୍ଧିରେ ଆପଣ ମୋଠୁ ଗ୍ରେଲାକ୍ ହେବେ, ସତରେ !

ସକତା ।। ବାପା ମତେ ସବୁବେଳେ ସେଷ୍ଟା କୁହନ୍ତି ।

ଜୋସେଫ ।। କ'ଣ ଗ୍ରେଲାକ୍ ବୋଲି ?

ସିକତା ।। ପ୍ରଥମର ମୁଁ ପରୀକ୍ଷାରେ ଭଲ ନମ୍ବର ରଖିଲେ ବାପା ସେଇକଥା କୁହନ୍ତି ଆଉ ଫ୍ରାଗ୍ସ ଟଫି ଦିଅନ୍ତି ।

ଜୋସେଫ ।। ଆଚ୍ଛା !

ସିକତା ।। ସେ ଦିନ ଗୁଡ଼ିକ ଖୁବ୍ ଭଲ ଥିଲା । ସତରେ, ଆମେ କନ୍‌ଭେଣ୍ଟରେ ପଢୁଥିଲା ଦିନ ଗୁଡାକ··· ବାପା ମନା କରିଥା'ନ୍ତି ଆଜେ ବାଜେ ପିଲାଙ୍କ ସହିତ ଖେଳିବା ପାଇଁ··· ମୁଁ ଲଜର୍ ପାଇଲେ ଖାଲି ଆଲ୍‌ଫା ସାଙ୍ଗରେ ଖେଳେ । ଆଲ୍‌ଫା, ଆମ କୁକୁର ନାଁ ।

ଜୋସେଫ ।। ପିଲାଦିନେ ମୁଁ ବି ଖୁବ୍ କୁକୁର ସଉକୀ ଥିଲି !

ସିକତା ।। ରବିବାର ହେଲେ ଆମେ ସମୁଦ୍ର ଦେଖିବାକୁ ଯାଉ । ଓଃ··· ସମୁଦ୍ର କେଡ଼େ ସୁନ୍ଦର··· (ନିଜ ଉପରେ ନିଜେ ଲୁହାଣ୍ଟି କହିଲା ଭଳି) ଆଉ ଆଜିକାଲି ଯୋଉ ଖଟଣୀ··· ସଫୋକେଶନ୍ !

।। ସାତ ।।

ଜୋସେଫ ।। ଆପଣ ଷ୍ଟାସ୍କାରଡ୍ ଜଣା ପଡୁଛନ୍ତି ।

ସିକତା ।। ଆପଣ ? ସିକତା ବୋଲି ଡ଼ାକୁ ନାହାନ୍ତି ?

ଜୋସେଫ ।। ସେଇଥିପାଇଁତ ତମେ ଷ୍ଟାସ୍କାରଡ୍ ଜଣାପଡୁଛ, ସିକତା···

ସିକତା ।। କ'ଣ କରିବ ଆଉ ? କିନ୍ତୁ ପିଲାଦିନଟା ଖୁବ୍ ଭଲ ଥିଲା ।
ଲୁଚେଇ ଲୁଚେଇ ଆମେ ଘୁଚ ଖେଳୁଥିଲୁ··· ହା ହା-ହା···

ଜୋସେଫ ।। ପିଲାଦିନ କଥାଗୁଡ଼ା ଖୁବ୍ ମନେ ରଖିଛ ଦେଖୁଛି ।

ସିକତା ।। ସ୍ମୃତିର ଗନ୍ତାଘର ।

ଜୋସେଫ ।। ପୋଏଟିକ୍ !

ସିକତା ।। ସତରେ, ଲେଖିଥିଲେ ଅନେକ କବିତା ଲେଖା ଯାଇ
ପାରନ୍ତା ମୋ' ଜୀବନଟାକୁ ନେଇ ।

ଜୋସେଫ ।। ଲେଖନ୍ତୁ ନା— !

ସିକତା ।। ପଢ଼ିବେ ?

ଜୋସେଫ ।। ନିଶ୍ଚୟ ।

ସିକତା ।। ଥ୍ୟାଙ୍କ୍ ୟୁ ।

ଜୋସେଫ ।। ଆପଣ ପର୍ଲସଡ୍ ।

ସିକତା ।। (ବଡ଼ ବଡ଼ ଆଖିରେ ଶାସନ କଲାଭଳି ଚାହିଁଛି) ଜୋସେଫ !

ଜୋସେଫ ।। ଆଇ ଆମ୍ ସରି । ତମେ ଖୁବ୍ ପର୍ଲସଡ୍ ସିକତା ।

ସିକତା ।। ଓ୍ୱେଲ୍ । ମୋ' ବୟସ କେତେ ହବ କହିଲେ ?

ଜୋସେଫ ।। ବଡ଼ ଅଡୁଆ ପ୍ରଶ୍ନ ।

ସିକତା ।। ତଥାପି··· ତଥାପି ଗୋଟାଏ ଅନ୍ଦାଜ୍··· ଚେହେରା ଦେଖିଲେ
ବୟସଟା ଅନୁମାନ କରି ହେବନି ?

ଜୋସେଫ ।। ତଥାପି··· ନାରୀମାନଙ୍କର ବୟସ କହିବା ଏକ ହନୁମାନ
ପ୍ରଶ୍ନ ବ୍ୟାପାର ।

ସିକତା ।। ବର୍ଷା ବଡ଼ କି ମୁଁ ବଡ଼ ?

ଜୋସେଫ ।। ଆପଣ ତା' ଝିଉଳି ଯେତେବେଳେ···

ସିକତା ।। ଖୁଉଜ ହେଇଗଲେ ବଡ଼ ହେଇ ଯାଆନ୍ତି ନା କ'ଣ ?

ଜୋସେଫ ।। ନା, ମାନେ··· ଠିକ୍ ସେମିତି ନୁହେଁ ଯେ···(ଅନୁମାନ କରି) ଆପଣଙ୍କୁ ଷୋହଳ କି ଅଠର ହେଇଥିବ ।

ସିକତା ।। ବେଶୀ ମିଛ କହୁଛନ୍ତି । ଆପଣ ଏଇ ଟ୍ୟାଲେଣ୍ଟ୍ ନେଇ ଜଣେ ଭଲ ପ୍ରେମିକ ହେଇ ପାରିବେ ।

ଜୋସେଫ ।। ନା— ମାନେ··· ଏଇଟା ମୋର ଗୋଟାଏ ଗେସ୍‌ୱର୍କ୍ ଥିଲା···

ସିକତା ।। ବର୍ଷାର ବୟସ ଜାଣିଛନ୍ତି ?

ଜୋସେଫ ।। ସେ ପୁଣି ଏକ ଦୁରୂହ ପ୍ରଶ୍ନ ।

ସିକତା ।। ଆପଣ ତାର ବନ୍ଧୁ ; ଏକଦା ସହପାଠୀ ଥିଲେ ।

ଜୋସେଫ ।। ତା' ବୋଲି ତ ମତେ ସିଏ କେବେ ତାଙ୍କ ବାର୍ଥଡେ ପାର୍ଟିକୁ ଡାକି ନାହାନ୍ତି ।

ସିକତା ।। କୋଡ଼ିଏ ବର୍ଷ ହେଲାଣି···

ଜୋସେଫ ।। ଆଉ ତମର ?

ସିକତା ।। ବର୍ଷା କହୁଚ ବାଇଶି ବର୍ଷ । ମୁଁ ଡ୍ୟାଡ଼ିଙ୍କୁ ଚିଠି ଲେଖିଚି ଏଇ ସମ୍ପର୍କରେ···

ଜୋସେଫ ।। ଆଇ ସି ।··· ମ୍ୟାଡ୍ ଗାର୍ଲ !

ସିକତା ।। କ'ଣ କହିଲେ ?

ଜୋସେଫ ।। ମ୍ୟାଡ ଗାର୍ଲ !

ସିକତା ।। ମୁଁ ପାଗଳୀ ?

ଜୋସେଫ ।। ୟେସ୍, ସେଣ୍ଟ୍ ପର୍ ସେଣ୍ଟ୍ ।

ସିକତା ।। ହା— ହା— ହା— ହା— । ମତେ ଏଇ ଶାଢୀଟା କେମିତି ମାନୁଚି ?

ଜୋସେଫ ।। ଚମତ୍କାର !

ସିକତା ।। ଦିଲ୍ଲୀରେ ଭଲ ଶାଢୀ ମିଳେ ?

।। ନଅ ।।

ଜୋସେଫ ॥ ଡ଼ି: ସି: ଏମ୍: ର !

ସିକତା ॥ ଆପଏଣ୍ଟମେଣ୍ଟ୍ ନ ପାଉଣୁ ସ୍ତୁତିଗାନ କଲେଣି କମାଣ୍ଡାଣ୍ଟର !

ଜୋସେଫ ॥ କାହିଁକି ?

ସିକତା ॥ ଡ଼ି: ସି: ଏମ୍: ରେ ଶାଢ଼ୀ ମିଳେ ବୋଲି ଜାଣିଛନ୍ତି ତ ?

ଜୋସେଫ ॥ ଆପଣଙ୍କର ମନେ ରଖିବା ଉଚିତ ମୋର ବିବାହ ହୋଇନି ।

ସିକତା ॥ ଶୀଘ୍ର ହେବାକୁ ଯାଉଛି ।

ଜୋସେଫ ॥ ଏଣିକି ଶାଢ଼ୀ ଚିହ୍ନିବା ଆରମ୍ଭ କରାଯିବ ।

ସିକତା ॥ ମୋ' ପାଇଁ ତା'ହେଲେ ଖଣ୍ଡେ ଶାଢ଼ୀ ଆଣିଦେବେ !

ଜୋସେଫ ॥ ସିଓର୍ !

ସିକତା ॥ ସତରେ ଆଣିଦେବେ ? (ହସି ଇଙ୍ଗିତ ଦେଇ)

ଜୋସେଫ ॥ ସତରେ ।

ସିକତା ॥ ବର୍ଷା ଆପଣଙ୍କୁ ଗାଳି ଦେବନି ?

ଜୋସେଫ ॥ ବର୍ତ୍ତମାନ ଆମେ··· (Please) ପ୍ଲିଜ୍··· ବର୍ଷା କଥା ଭାବିବାନି ।

ସିକତା ॥ ଆଃ !···

ଜୋସେଫ ॥ କ'ଣ ହେଲା ?

ସିକତା ॥ ଭାରି କ୍ଲାନ୍ତ ଲାଗୁଚି ।

ଜୋସେଫ ॥ ଆପଣ ଗୃହକର୍ତ୍ତ୍ରୀ ନକର ପାଠ ପଢ଼ିଲେନି ?

ସିକତା ॥ କ୍ଳାନ୍ତ ।

ଜୋସେଫ ॥ ଆଇ. ଏ. ଏସ୍. ପରୀକ୍ଷାଟା ଦେଇ ପାରିଥାନ୍ତେ !

ସିକତା ॥ ହାଃ··· !

ଜୋସେଫ ॥ ସେ ଯାହା ହେଉ··· ଆପଣ ଜୀବନରେ...

ସିକତା ॥ ପୁଣି ଆପଣ କହିଲେ ?

ଜୋସେଫ ॥ (ଏଇ ଥରକ ମନ୍ତ୍ରମୁଗ୍ଧ ହେଲା ଭଳି) ସିକତା !

ସିକତା ॥ ଅନେକ ସ୍ୱପନ ଥିଲା ।

ଜୋସେଫ ।। ଗତ ଆତ୍ମାର ପାବନ । ସ୍ୱପ୍ନ ଦେଖିବା ଏକ ସୁନ୍ଦର ଅନୁଭୂତି ।

ସିକତା ।। ପ୍ରତାପ ମତେ ଖାଲି ତେଲ ଲୁଣର ଦୁନିଆଟେ ଛଡ଼ା ଆଉ କିଛି ଦେଇ ପାରିଲେନି ।

ଜୋସେଫ ।। ପ୍ରତାପ ଭାଇ ଖୁବ୍ ଭଲ ।

ସିକତା ।। ମୁଁ ତାଙ୍କୁ ଲଭ୍ ମ୍ୟାରେଜ୍ କରିଛି ।

ଜୋସେଫ ।। ଭାରତରେ ବିବାହ ପରେ ପ୍ରେମ ଆରମ୍ଭ ହୁଏ ।

ସିକତା ।। ଆଃ ! ପ୍ରେମ !...

ଜୋସେଫ ।। ଆପଣ ଅବିବାହିତ ହୋଇଥିଲେ କ'ଣ ଖୁସି ହୋଇଥାନ୍ତା ?

ସିକତା ।। କ୍ଳାନ୍ତ ଜୋସେଫ... କ୍ଳାନ୍ତ... ସଫୋକେଶନ୍...

ଜୋସେଫ ।। ତା'ମାନେ... ଆପଣ ଏ ବିବାହରେ ସନ୍ତୁଷ୍ଟ ନୁହନ୍ତି ?

ସିକତା ।। ମୁଁ ଭାବିଥିଲି... ଆମେ ବିବାହ ପରେ ମଧ୍ୟବିତ୍ତ ପରିବାରର ଏଇ ଦୁର୍ବିସହ ଆର୍ଥିକ ଅବସ୍ଥା ଡେଇଁ ସୁଖୀ ହେବୁ ।

ଜୋସେଫ ।। ଆପଣ ଟିକିଏ ଧୂଆଧୋଇ ହୋଇ ତାଜା ହେଇ ଆସନ୍ତୁ ।

ସିକତା ।। ଏ କ୍ଳାନ୍ତି ଦୂର ହେଇଯିବ ?

ଜୋସେଫ ।। ତା'ପରେ କପେ କଫି ପିଇ ଦେବେ ।

ସିକତା ।। ଓଃ ! ସିଲ୍ଲି ।

ଜୋସେଫ ।। ସିଲ୍ଲୀ ?

ସିକତା ।। ଆଇ ଆମ୍ ସରି । ତମେ ବର୍ତ୍ତମାନ ବସ ଜୋସେଫ, ମୁଁ ଏଇକ୍ଷଣି ଆସୁଛି ।

ଜୋସେଫ ।। ଆସ, ମୁଁ ବି ଟିକିଏ ବାହାରୁ...

ସିକତା ।। ନା- ନା- (ଭିତରୁ ଆସିଛି ପ୍ରବ୍ରତ୍) ଏଇତ ପ୍ରବତ୍ ଆସିଲେଣି ।

ପ୍ରବତ ।। ହାଲୋ ! ନମ୍ବର ଓ୍ୱାନ୍ !

ଜୋସେଫ ।। ହ୍ୟାଲୋ !

ସିକତା ।। ଜୋସେଫ ମହାପାତ୍ର । ଡେପୁଟୀ ସେକ୍ରେଟାରୀ ଜାକୋବ୍ ମହାପାତ୍ରଙ୍କ ପୁଅ ।

ଫବଲ୍ ॥ ଏତେ ସବୁରୁ କ'ଣ ମିଳବ ? ମୁଁ ତାଙ୍କୁ ନମ୍ବର ଓ୍ୱାନ୍ ବୋଲି ଜାଣିଛୁ ।

ସିକତା ॥ ତମେ ଗପୁଥାଅ, ମୁଁ ଏଇ ମିନିଟିଏ ଭିତରେ ଆସୁଛୁ ।

[ ଭିତରକୁ ଯାଉଛୁ ]

ଜୋସେଫ ॥ ଫବଲ୍ !

ଫବଲ୍ ॥ ୟେସ୍ ମାଷ୍ଟର !

ଜୋସେଫ ॥ ବର୍ଷା କାହିଁ ?

ଫବଲ୍ ॥ କମିଶନ୍ ?...

ଜୋସେଫ ॥ ବର୍ଷା କାହିଁ ?

ଫବଲ୍ ॥ କମିଶନ୍ ନ ମିଳିଲେ ଏପଟ୍ ଉତ୍ତର ବନ୍ଦ ।

ଜୋସେଫ ॥ କେତେ ଟଙ୍କା ଦରକାର ?

ଫବଲ୍ ॥ ପୂର୍ବବତ୍ । କପେ ଲାଇଟ୍ କଫି ଏବଂ ଗୋଟାଏ ପ୍ୟାକେଟ୍ ସିଗାରେଟ ।

ଜୋସେଫ ॥ ମଞ୍ଜୁର ।

ଫବଲ୍ ॥ ବର୍ଷା ନାଚ କ୍ଲାସକୁ ଯାଇଛୁ ।

ଜୋସେଫ ॥ ନାଚ କ୍ଲାସ ଆଉ ବର୍ଷା ?

ଫବଲ୍ ॥ ଓଡ଼ିଶୀ ନାଚ । ଗୋଟାଏ ମୁଦ୍ରା ଦେଖିବ ?

ଜୋସେଫ ॥ ଆହା ହା । ଆଉ, ବର୍ଷା କେତେବେଳେ ଫେରିବ ?

ଫବଲ୍ ॥ କେତେବେଳେ ଫେରିବ ? ଉମ୍... ସେଇଟାତ କହି ହେବନି !

ଜୋସେଫ ॥ ତା' ମାନେ ?

ଫବଲ୍ ॥ ସାତଟା ବାଜି ପାରେ, ଆଠଟା ବାଜି ପାରେ, ସାଢେ ଆଠଟା ବାଜିପାରେ, ନ'ଟା ବାଜିପାରେ, ସାଢେ ନ'ଟା ବାଜିପାରେ, ଦଶଟା ବାଜିପାରେ ।

ଜୋସେଫ ॥ ରାତିରେ ନ ଆସି ପାରେ ।

ସବିତ୍ ।। ଓଃ··· ନୋ', ନନ୍ସେନ୍ସ ଫେରକ୍ସ । ( ଟିକଏ ପରେ )
ହା ହା-ହା—

ଜୋସେଫ ।। କ'ଣ ହେଲା ?

ସବିତ୍ ।। ତମେ ଗୋଟେ ବୋକା ।

ଜୋସେଫ ।। ଏଁ··· ?

ସବିତ୍ ।। ତମର ଫିଲ୍‌ଜଆମି ଯାଇନ ।

ଜୋସେଫ ।। ଆଚ୍ଛା !

ସବିତ୍ ।। ନାଚ କ୍ଲାସ କ'ଣ ରାତ ସାରା ହୁଏ ?

ଜୋସେଫ ।। ହେଲେ କ୍ଷତ କ'ଣ ?

ସବିତ୍ ।। ହା- ହା- ହା-, ନନ୍ସାତ ବୋକା, ଚାଲ ଚାଲ, ମୁଁ ତମକୁ
ନାଚ ଦେଖେଇ ନେବି ।

ଜୋସେଫ ।। ଆଚ୍ଛା ବର୍ଷା କ'ଣ ଆଗରୁ ନାଚୁଥିଲା— ନା- ଏଇ ଆରମ୍ଭ
କରିଛି ?

ସବିତ୍ ।। ପିଲାଦିନୁ ଆମେ ବରହମ୍‌ପୁରରେ ଥିଲାବେଳେ ଗଞ୍ଜାମ କଳା
ପରିଷଦରେ ଶିଖୁଥିଲା । ବର୍ତ୍ତମାନ ଏଇଠି··· ରବୀନ୍ଦ୍ର
ମଣ୍ଡପରେ···

ଜୋସେଫ ।। ଭଲ, ସୁନ୍ଦର ।

ସବିତ୍ ।। (କିଛି ସମୟ ତା' ମୁହଁକୁ ଚାହିଁ) କିନ୍ତୁ ତମେ ଏମିତି ପଚାରୁଛ
କାହିଁକି ?

ଜୋସେଫ ।। କାହିଁ, ନାହିଁତ !

ସବିତ୍ ।। ଆଚ୍ଛା ମାଷ୍ଟର !

ଜୋସେଫ ।। କ'ଣ ?

ସବିତ୍ ।। ତମେ ବର୍ଷାକୁ ଭଲ ପାଉଛ ?

ଜୋସେଫ ।। (କଥା ବୁଲେଇ) ପଢା ପଢି କେମିତି ଚାଲିଛି ?

ସବିତ୍ ।। ଯଥା ପୂର୍ବଂ ତଥା ପରଂ ।

।। ତିନ ।।

ଜୋସେଫ ।। ଅନ୍ତତଃ ବି. ଏ ଟା ପାଶ କର ।

ସଂବିତ୍ ।। ଚାକିରି ମିଳିବ ?

ଜୋସେଫ ।। ଆଗେ ପାଶ୍‌ଟା କରିସାର…

ସଂବିତ୍ ।। ତମେ ଠକ, ମିଛୁଆ ।

ଜୋସେଫ ।। ତମ ଦେଇ କିଛି ହବନି ଦେଖୁଛି !

ସଂବିତ୍ ।। ମୋ'ଭଳି ଏମିତି ହଜାର ହଜାର ବି. ଏ. ପାଶ କରୁଛନ୍ତି !

ଜୋସେଫ ।। ତମେ ବି' କର ।

ସଂବିତ୍ ।। (ରାଗିଲା ଭଳି) କାହିଁକି ?

ଜୋସେଫ ।। ତା ପରେ ଏମ୍. ଏ. ପଢ଼ିବ ।

ସଂବିତ୍ ।। ମନେକର ମୁଁ ଏମ୍. ଏ. ପାଶ କଲି ।

ଜୋସେଫ ।। କୋଉ ସବ୍‌ଜେକ୍‌ଟରେ ?

ସଂବିତ୍ ।। ଉମ୍… ମନେକର… ଇଂରାଜୀ

ଜୋସେଫ ।। ସେଇଟା ଝିଅମାନଙ୍କ ପାଇଁ ।

ସଂବିତ୍ ।। ଓଡ଼ିଆ ।

ଜୋସେଫ ।। ସେଇଟା ବି'

ସଂବିତ୍ ।। ପଲିଟିକାଲ୍ ସାଇନ୍‌ସ୍

ଜୋସେଫ ।। ଇଏସ୍, ତାପରେ ଆଇ. ଏ ଏସ୍. ! ଆଇ.ଏ.ଏସ୍ ଟା ଦବ ।

ସଂବିତ୍ ।। ହାଃ… ହାଃ… ହାଃ… ତା'ପରେ କସୃଢ଼ି ହେଇ ଏମିତି ପଡ଼ିବ ଯେ ଗୋଡ଼ ହାତ ଛତୁ ହେଇଯିବ !

ଜୋସେଫ ।। ତମର ଉଚ୍ଚ ଆଶା ରଖିବା ଉଚିତ ।

ସଂବିତ୍ ।। ତମ ବଡ଼-ଘରର ପିଲା ସବୁ ଏମିତି କହନ୍ତି ।

ଜୋସେଫ ।। ଏବଂ କରନ୍ତି ମଧ୍ୟ । ଉଦାହରଣ ସ୍ୱରୂପ ମୁଁ ନିଜେ—

ସଂବିତ୍ ।। ତମେ ମୋର ଆଦର୍ଶ ହେବ ?

ଜୋସେଫ ।। କାହିଁକି ? ତମ ଆଖିରେ ମୁଁ କ'ଣ ଅଯୋଗ୍ୟ ?

ସଂବିତ୍ ।। ହୁଁ, ହେଃ… ହେଃ… ହେଃ…

।। ଚଉଦ ।।

ଜୋସେଫ ॥ ଫାଜଲାମି ଦେଖଉଚ ? ଦେଖିବ କାନ ମୋଡ଼ି ଦେବ ?

ସଂବିତ୍ ॥ କାହିଁକି ମୁଁ କ ଦୋଷ କରିଚ ?

ଜୋସେଫ ॥ ବଡମାନଙ୍କୁ ଉତ୍ତର ଦିଅନ୍ତ ନାହିଁ ।

ସଂବିତ୍ ॥ ଓଃ ! ପିଲାଦିନେ ବାପା ଏକଥା କହୁଥିଲେ ।

ଜୋସେଫ ॥ ବର୍ତ୍ତମାନ କହୁ ନାହାନ୍ତି ?

ସଂବିତ୍ ॥ (ଝରକା ସେ ପଟେ ଦିଶୁଥିବା ଜଣେ ବୃଦ୍ଧ ଓ ତାଙ୍କ ଘର ପଟରେ ଘେରି ରହିଥିବା ଧୂମ୍ର କୁଂଡ଼ଳୀକୁ ଲକ୍ଷ୍ୟ କରି) ସେଇଠ ବସି ମନକୁ ମନ ଗପୁଚ, ବୁଢା ।

ଜୋସେଫ ॥ ଛି··· ଛି, ତମର ମୁହଁରେ ଲାଜ ସରମ ରହିବା ଉଚିତ୍, ବାପାଙ୍କୁ ଏମିତି କୁହନ୍ତି ?

ସଂବିତ୍ ॥ ମୈଁ କ୍ୟା › କରୁଁ ଶ୍ୟାମ ମୁଝେ ବୁଢ୍ଢା ମିଲ୍ ଗୟା··· ମୈଁ··· କ୍ୟା···

ଜୋସେଫ ॥ ନନ୍‌ସେନ୍‌ସ୍ !

ସଂବିତ୍ ॥ ହାଃ··· ହାଃ··· ହାଃ···

ଜୋସେଫ ॥ ଅଭଦ୍ର ! ମଫସଲି !

ସଂବିତ୍ ॥ ଉଚ୍ଚ ହେବା ପାଇଁ ନାହିଁ ଆଶା ମୋର । ହିଃ···ହିଃ···ହିଃ···

ଜୋସେଫ ॥ ମାଷ୍ଟର କ୍ୟାଣ୍ଟିନ୍ ପାଖରେ ଠିଆ ହୋଇ ଝିଅମାନଙ୍କୁ ହୁଇସିଲ୍ ମାରିଲେ ବଡ଼ ହେଇଯିବ ?

ସଂବିତ୍ ॥ ମୋ' ଇଚ୍ଛା । ମୁଁ ହୁଇସିଲ୍ ମାରିବ ।

ଜୋସେଫ ॥ କାହିଁକି ମାରିବ ? ଏମିତି ହୁଇସିଲ୍ ମାରିଲେ ଝିଅଗୁଡା କ'ଣ ତମକୁ ପ୍ରେମ କରି ପକେଇବେ ?

ସଂବିତ୍ ॥ ମୁଁ କୋଉ ଝିଅକୁ ପ୍ରେମ କରିବାକୁ ଚାହେଁନ ।

ଜୋସେଫ ॥ ତା'ହେଲେ ହୁଇସିଲ୍ ମାର କାହିଁକି ?

ସଂବିତ୍ ॥ ସମସ୍ତେ ମାରନ୍ତି ବୋଲି !

ଜୋସେଫ ॥ ସମସ୍ତେ ହୁଇସିଲ୍ ମାରନ୍ତି ବୋଲି ତମେ ମଧ୍ୟ ମାରିବନା କ'ଣ ?

ସବ୍ରତ ॥ ମାଶ୍ରବନ ?

ଜୋସେଫ ॥ କାହିଁକି ? ତମେ କଣ ମେଣ୍ଢା ?

ସବ୍ରତ ॥ ଏଇଟା ସ୍ମାର୍ଟନେଶ୍ ।

ଜୋସେଫ ॥ ନନ୍‌ସେନ୍‌ସ !

ସବ୍ରତ ॥ ମତେ ହୁଇସିଲ୍ ମାରିବା ପାଇଁ ଭଲ ଲାଗେ, ତେଣୁ ମୁଁ ମାରିବ, ମୋ ଇଚ୍ଛା ।

ଜୋସେଫ ॥ ଏସବୁଡ଼ା ସବୁ ଅଭଦ୍ରତା, ସଫିଷ୍ଟିକେଶନ୍ ଶିଖ, ଗମ୍ଭୀର ରୁହ ।

ସବ୍ରତ ॥ ମଦ ଖାଅ ଏବଂ ସରକାରଙ୍କ ଟଙ୍କା ଚୋରି କର ।

ଜୋସେଫ ॥ ଗମ୍ଭୀର ରହିବା ଅର୍ଥ ମଦ ଖାଇବା ନୁହେଁ କି ଚୋରି କରିବା ନୁହେଁ ।

ସବ୍ରତ ॥ କିନ୍ତୁ ସବୁ ଗମ୍ଭୀର ଲୋକଙ୍କୁ ଦେଖିଲେ ସେମାନେ ଚୋର ବୋଲି ମୋର ମନେ ହୁଏ । ମୋର ମନେହୁଏ, ସେମାନଙ୍କର ମଧ୍ୟ ଏମିତି ହୁଇସିଲ୍ ମାରିବା ପାଇଁ ଇଚ୍ଛା ଅଥଚ କାଳେ କିଏ କ'ଣ କହିଦେବ ବୋଲି ଡ଼ରୁଛନ୍ତି ।

ଜୋସେଫ ॥ ତା' ଅର୍ଥ ତମେ ଜଣେ ନାସ୍ତିକ ଯୁବକ ?

ସବ୍ରତ ॥ ଏତେ ସବୁ ସାର୍ଟିଫିକେଟ୍‌ରୁ ମୋ'ର କ'ଣ ମିଳିବ ? ମୋ'ର ଯେତେବେଳେ ଯାହା ଇଚ୍ଛା ମୁଁ ସେଯା କରେ ।

ଜୋସେଫ ॥ ଚାଇଲ୍‌ଡ଼ିଷ୍‌ନେଶ୍ । ତମର ବୟସ କେତେ ?

ସବ୍ରତ ॥ ବାଇଶି ।

ଜୋସେଫ ॥ ବାଇଶି ବର୍ଷରେ ବିଦେଶରେ ଲୋକେ ନୋବେଲ୍ ପୁରସ୍କାର ପାଉଛନ୍ତି ।

ସବ୍ରତ ॥ ସେଇଥି ପାଇଁ ମୁଁ ଭାବୁଚି ବିଦେଶ ଚାଲିଯିବି ।

ଜୋସେଫ ॥ କ'ଣ ମାଷ୍ଟର୍ କ୍ୟାଣ୍ଡିନ୍ ଛକରୁ ହୁଇସିଲ୍ ମାରି ମାରି ?

ସବ୍ରତ ॥ ସେଇଥି ପାଇଁ ମୁଁ ଚିନ୍ତା କରୁଛି ।

ଜୋସେଫ ॥ ଏକା ଏକା ଚିନ୍ତା କରୁଛ ନା— ସାଙ୍ଗରେ କାହାକୁ ନେଇ ଚିନ୍ତା କରୁଛ ?

ସମ୍ବିତ୍ ॥ ମୋର ସାଙ୍ଗ ଅରୁଣ ।
ଜୋସେଫ ॥ ସେ ବି ତମ ଭଳି ଜଣେ ମହାପୁରୁଷ ହୋଇଥିବେ ?
ସମ୍ବିତ୍ ॥ ହଁ, ଓଡ଼ିଶାଟା ଆଉ ଭଲ ଲାଗୁନି ।
ଜୋସେଫ ॥ କୋଉ ବିଦେଶକୁ ଯିବ ?
ସମ୍ବିତ୍ ॥ ବମ୍ବେ ।
ଜୋସେଫ ॥ ବମ୍ବେଟା ତମ ପାଇଁ ବିଦେଶ ?
ସମ୍ବିତ୍ ॥ ହଁ ।
ଜୋସେଫ ॥ ଫିଲ୍ମ ହିରୋ ହେବ ?
ସମ୍ବିତ୍ ॥ ହଁ ।
ଜୋସେଫ ॥ ପ୍ରୋଡ୍ୟୁସରଙ୍କ ବାସନ ମାଜିବ ?
ସମ୍ବିତ୍ ॥ ଓଡ଼ିଶାରେ ରହିବା ଅପେକ୍ଷା ବମ୍ବେରେ ବାସନ ମାଜିବା ଭଲ ।
ଜୋସେଫ ॥ ଖୁବ୍ ଭଲ ହେବ, ତୁମେ ସେଯା କର ।
ସମ୍ବିତ୍ ॥ ହୁଁ ।

[ କିଛି ସମୟ ନୀରବତା, ସମ୍ବିତ୍ ନଖ ଖେଚିବାଇବା ଆରମ୍ଭ କରିଛି··· ]

ଜୋସେଫ ॥ ନାଷ୍ଟି !
ସମ୍ବିତ୍ ॥ ଉଁ ?
ଜୋସେଫ ॥ ନାଷ୍ଟି ! ନାଷ୍ଟି ବୟ ।
ସମ୍ବିତ୍ ॥ କିଏ ? ମୁଁ ?
ଜୋସେଫ ॥ ନଖ ଘୁଡ଼େ ଖେଚୋଉଚ ? ବାଇଶ ବର୍ଷର ୟଙ୍ଗ ମ୍ୟାନ୍ ?
ସମ୍ବିତ୍ ॥ ହୋଃ··· ହୋଃ···
ଜୋସେଫ ॥ ବିହେବ୍ ଲାଇକ୍ ଏ ଗ୍ରାଜୁଏଟ୍ !
ସମ୍ବିତ୍ ॥ ହାଃ··· ହାଃ···
ଜୋସେଫ ॥ ନନ୍‌ସେନ୍‌ସ !
ସମ୍ବିତ୍ ॥ ହିଃ··· ହିଃ··· ହିଃ...
ଜୋସେଫ ॥ (ରାଗି ଯାଇ) ମୁଁ ଗଲିଲି, ବର୍ଷା ଆସିଲେ କହିଦେବ ।

॥ ସତର ॥

ସଂବତ୍ ।। (ଅଟକେଇ) ହାଁ···ହାଁ କୁଆଡ଼େ ଯାଉଚ ମାଷ୍ଟର ? ମୋ କହିଲନି ?

କୋସେଫ ।। (ରାଗି ଯାଇ) କ'ଣ ମୁଁ ହୋଟେଲ୍ ଖୋଲିଚ ଯେ ତମକୁ ଚା'କପେ ମାଗଣାରେ ଦେବି ? ନା ପାନ ଦୋକାନୀ ବୋଲି ଭାବିଲ ?

ସଂବତ୍ ।। ତମେ 'ନମ୍ବର ଓ୍ୱାନ୍' ବୋଲି ଭାବିଚ ।

କୋସେଫ ।। ଯାହା ଭାବିଚ ଭାବିଥା'— [ ଯାଉଥିଲେ··· ]

ସଂବତ୍ ।। ମାଷ୍ଟର ?

କୋସେଫ ।। କ'ଣ ?

ସଂବତ୍ ।। ତମେ ସତରେ ବର୍ଷାକୁ ଭଲ ପାଅ ?

କୋସେଫ ।। ଭଲ ପାଉନି ଯେ ଆଉ କ'ଣ ଖରାପ ପାଉଚି ?

ସଂବତ୍ ।। ନା, ମାନେ··· (ଫୁସ୍‌ଫୁସ୍ ହେଇ) ପ୍ରେମ କରୁଚ ?

କୋସେଫ ।। ହଁ ।

ସଂବତ୍ ।। କେମିତି ପ୍ରେମ କଲ ?

କୋସେଫ ।। ସେଇସବୁଡ଼ାକ ଏଇକ୍ଷଣି କହିବାକୁ ହେବନା କ'ଣ ?

ସଂବତ୍ ।। ପ୍ରଥମେ ବର୍ଷାକୁ କୋଉଠି ଦେଖିଲ ?

କୋସେଫ ।। କ୍ଲାସରେ, ପି. ୟୁ. ପଢୁଥିଲି ।

ସଂବତ୍ ।। ତା'ପରେ କୋଉଠି ଦେଖିଲ ?

କୋସେଫ ।। ରାସ୍ତାରେ ।

ସଂବତ୍ ।। (ଖୁସି ହେଇ) ନାଇସ୍, ହୁଇସିଲ୍ ମାରିଲ ?

କୋସେଫ ।। ନା ।

ସଂବତ୍ ।। ଆଉ କଣ କଲ ?

କୋସେଫ ।। ସେ ସବୁଡ଼ାକ ତମକୁ କହିବା କଥା ନୁହେଁ ।

ସଂବତ୍ ।। ତଥାପି...

କୋସେଫ ।। ଶୁଣିଲେ ମୁଣ୍ଡ ଗରମ ହେଇଯିବ !

ସଂବିତ୍ ।। ତମର ସ୍କୁଟର୍ ଥିଲା ?

ଜୋସେଫ ।। ହଁ ।

ସଂବିତ୍ ।। ସେଇଠୁ ବର୍ଷାକୁ ପଛରେ ବସେଇ ପାହାଡ଼ ରାସ୍ତାରେ ତ ଯାଇଥିବ...ମାନେ...ନନ୍ଦନ କାନନ ରାସ୍ତାରେ । ଦୁଇପଟେ ଫୁଲଗଛ ଜିଂଦଗୀ ଏକ୍ ସଫର୍ ହୈ ସୁହାନା...

ଜୋସେଫ ।। ଫୁଲ ଗଛରେ ଫୁଲ, ଅଜସ୍ର ।

ସଂବିତ୍ ।। ଫୁଲ ପାଖରେ ଗୋଟେ ଗୋଟେ ପ୍ରଜାପତି ।

ଜୋସେଫ ।। ବେଳେ ବେଳେ ହଳଦୀ ବସନ୍ତ ପକ୍ଷୀଟିଏ...

ସଂବିତ୍ ।। (ଉତ୍ସାହିତ ହୋଇ) ଓଃ... ସୋ' ନାଇସ୍... ଦ୍ୱୈତ କଣ୍ଠରେ ଗୀତ ଗାଇଲ ?

ଜୋସେଫ ।। ମତେ ଗୀତ ଗାଇ ଆସେନା ।

ସଂବିତ୍ ।। ଆଉ କ'ଣ କ'ଣ ଆସେନା ?

ଜୋସେଫ ।। ହୁଇସିଲ୍ ମାରି ଆସେନା ।

ସଂବିତ୍ ।। ତା'ହେଲେ ହ୍ୱରୋଇନ୍ ଗାଇଥିବ ?

ଜୋସେଫ ।। (ନ ବୁଝି) ହ୍ୱରୋଇନ୍? ...ମାନେ...

ସଂବିତ୍ ।। ତା'ପରେ ନନ୍ଦନ କାନନରେ ବୋଟିଂ କଲ ?

ଜୋସେଫ ।। ଥରେ ଅଧେ କରିଥିବୁ ।

ସଂବିତ୍ ।। କାହିଁ ବର୍ଷା ମତେ କହିନତ ! ଅଙ୍କି ଆସୁ ସିଏ...

ଜୋସେଫ ।। ଏସବୁତ କୁହା ଯାଏନା ।

ସଂବିତ୍ ।। ତା'ପରେ କୋଉଠି ଦେଖା ହେଉଥିଲ ?

ଜୋସେଫ ।। ନା, ଭୁଲ କହିଲି, ତା ପୂର୍ବରୁ 'ଲେଟର୍' ଦେଇଥିଲି, ଲଭ୍ ଲେଟର୍ !

ସଂବିତ୍ ।। (ବିରକ୍ତ ହୋଇ) ଓ... ନୋ'... ଏଇଟାତ ଭୁବନେଶ୍ୱର ଷ୍ଟାଇଲ୍ !

ଜୋସେଫ ।। କିନ୍ତୁ ଏ ଘଟଣା ଭୁବନେଶ୍ୱରର ଯେ...

।। ଉଣେଇଶି ।।

ସଂବିତ୍ ।। ଓ ? ଆଚ୍ଛା, ତା'ପରେ କୋଉଠି ଦେଖା ହୋଇଥିଲ ?

ଜୋସେଫ ।। ଟାଉନ୍ ବସ୍‌ରେ ।

ସମ୍ବିତ୍ ।। ଇଂପସିବଲ୍ ।

ଜୋସେଫ ।। କାହିଁକି ?

ସମ୍ବିତ୍ ।। ତମ କାହାଣୀ ଅନ୍‌ନ୍ୟାଚୁରାଲ୍ !

ଜୋସେଫ ।। ନା ।

ସମ୍ବିତ୍ ।। ତମେ ମିଛ କହୁଚ ।

ଜୋସେଫ ।। ଇଂପସିବଲ୍ । ମୁଁ ପ୍ରତିଦିନ ଟାଉନ୍ ବସ୍‌ରେ ତାକୁ ମିଶୁଥିଲି ।

ସମ୍ବିତ୍ ।। କିନ୍ତୁ ଏଇଟା ଟ୍ରେନ୍ ହେବାର ଥିଲା ।

ଜୋସେଫ ।। କାହିଁକି ?

ସମ୍ବିତ୍ ।। କୌଣସି ଫିଲ୍ମରେ ଟାଉନ୍ ବସ୍‌ରେ ପ୍ରେମ ହୋଇନି ।

ଜୋସେଫ ।। ବଡ଼ ଉଦ୍ଭଟ ଚିନ୍ତା ତମର ଦେଖୁଚି । ତମେ ସ୍ୱାର ଭିତରେ
ଗୋଟାଏ ଫିଲ୍ମ କଥା ଭାବୁଥିଲ ?

ସମ୍ବିତ୍ ।। ପ୍ରେମ ମାନେ ତ ଫିଲ୍ମ । ବମ୍ବେ ଟାଇପ୍ !

ଜୋସେଫ ।। ନାବାଳକ ଭଳି ହୁଅନା, ତମକୁ ବାଇଶି ବର୍ଷ ହେଲାଣି ।

ସମ୍ବିତ୍ ।। ନାବାଳକ, ଶୈଶବ, ଏଇଟାକୁ 'ଶୈଶବ' କହନ୍ତି ପରା !

ଜୋସେଫ ।। ଶିଶୁ ଅବସ୍ଥା ।

ସମ୍ବିତ୍ ।। ନା- ନା, ଶୈଶବ ।

ଜୋସେଫ ।। ହଉ, ତମ କଥା ରହିଲା ।

ସମ୍ବିତ୍ ।। ଶିଶୁ ଓ ଶୈଶବ ଭିତରେ ପ୍ରଭେଦ କ'ଣ ?

ଜୋସେଫ ।। ଗୋଟାଏ ବିଶେଷ୍ୟ ଓ ଗୋଟାଏ ବିଶେଷଣ ।

ସମ୍ବିତ୍ ।। ହାଃ... ହାଃ... ହାଃ...

ଜୋସେଫ ।। କ'ଣ ହେଲା ?

ସମ୍ବିତ୍ ।। କୋଉଟା ବିଶେଷ୍ୟ ଆଉ କୋଉଟା ବିଶେଷଣ ?

ଜୋସେଫ ।। ସେଇଥିରୁ ତମର କ'ଣ ଗଲା ?

।। କୋଡ଼ିଏ ।।

ଫବତ୍ ।। ହୁଃ… ହୁଃ… ହୁଃ…

ଜୋସେଫ ।। ବି. ଏ. ପଢିଲଣି । ଲଜ ମାଉଚୁନ୍ନ ? ବିଶେଷ୍ୟ, ବିଶେଷଣ ହଉଚ ?

ଫବତ୍ ।। ତମେ ଆଇ. ଏ. ଏସ୍. ଦେଉଚ ପରା ?

ଜୋସେଫ ।। ତା' ଅର୍ଥ ମୁଁ ତୁମକୁ ଓଡ଼ିଆ ବ୍ୟାକରଣ ପଢେଇବି ?

ଫବତ୍ ।। ହଉ, ଭଲ, ତମ ଫଣ୍ଟାଣି ଜଣା ପଡ଼ିଲା । ଉଠ ।

ଜୋସେଫ ।। ବର୍ଷା ଏଇକ୍ଷଣି ଆସିଯିବ ବୋଧହୁଏ !

ଫବତ୍ ।। ଓଃ ! ସିଏତ ତାର ଆସିବ, ତମେ ଏମିତ ବ୍ୟସ୍ତ ହେଇ ପଡ଼ୁଚ କାହିଁକି ?

ଜୋସେଫ ।। ବ୍ୟସ୍ତ ହେବିନି ? ଏଇଠି କୋଡ଼ିଏ ମିନଟ୍ ହେଲା ଅପେକ୍ଷା କରିଚ !

ଫବତ୍ ।। ଅପେକ୍ଷା କରିଚ କୋଉଠି ? ଭାଉଜଙ୍କ ସାଙ୍ଗରେ ଗପୁଥିଲ ଆଉ ମୋ' ସାଙ୍ଗରେ ଗପୁଥିଲ !

ଜୋସେଫ ।। ଏବଂ ବୋର୍ ହଉଥିଲ ।

ଫବତ୍ ।। ବେଶ୍, ଚାଲ, ସିଗାରେଟ୍ ପିଇ ଆସିବା, ଏଇ ଆଗ ଛକଟାରେ ।

ଜୋସେଫ ।। ଚାଲ ।

[ ଦୁହେଁ ଯାଉଛନ୍ତି । ମଞ୍ଚ କିଛି ସମୟ ପାଇଁ ଖାଲି । ଗୀଟାର୍‌ରେ ଏକ ଆଲାପ ଦିଆ ଯାଇପାରେ । ଲୟ ଦ୍ରୁତ ହେବା ଆବଶ୍ୟକ । ଗୀଟାର୍ ଅଭାବରେ ମେଣ୍ଡୋଲିନ୍ କିମ୍ବା ଗୀଟାର୍‌ରେ ମଧ୍ୟ କାମ ଚଳାଇ ଦିଆ ଯାଇପାରେ ।

ମଞ୍ଚର ଆଲୋକରେ ସନ୍ଧ୍ୟା ଘନୀଭୂତ ହୋଇ ଆସିବାର ଇଫେକ୍ଟ୍ । ଆଲୋକ ସଙ୍ଗେ ସମନ୍ୱୟ ରକ୍ଷା କରି ଆବହ ସଙ୍ଗୀତ ଗମ୍ଭୀର ହେବ । ମୋଟ ଉପରେ ନାଟକର ସ୍ୱର ପରିବର୍ତ୍ତନ ପାଇଁ । ବର୍ତ୍ତମାନ ସିକତା କପେ କଫି ଧରି ପିଇ ପିଇ ଆସିଛି । ]

।। ଏକୋଇଶି ।।

ସୀତାନାଥ ॥ (ଭିତରୁ) ବୋହୂ !

ସିକତା ॥ (କେବଳ ଗୁହଁଉଚ)

ସୀତାନାଥ ॥ ବୋହୂ !

ସିକତା ॥ କ'ଣ ?

ସୀତାନାଥ ॥ ଛୁଟି ହେଇଗଲା ?

ସିକତା ॥ ଏଇ ସନ୍ଧ୍ୟାବେଳଟାରୁ ?

ସୀତାନାଥ ॥ ନାଇଁ ରେଷ୍ଟୁରେଇ ଘରୁ କ'ଣ ଗୋଟାଏ ବାସୁଥିଲା ଯେ…

ସିକତା ॥ ସେଇଟା କଫି ।

ସୀତାନାଥ ॥ ଓ… (ଟିକିଏ ନୀରବତା) ହଉ, କପେ କଫି ଦେଇ ଯା'ତ !

ସିକତା ॥ କଫି ଆଉ ନାଇଁ, ଦୁଧ କମ୍ ଥିଲା !

ସୀତାନାଥ ॥ ଆଚ୍ଛା ହଉ, ତୁ' ଏମିତ ପାଟି କରନା ଝିଅ ।

ସିକତା ॥ ହଁ, ମୋ' ପାଟିଟାତ ଏ ଘରକୁ ବଡ଼ ହେଇଚ !

ସୀତାନାଥ ॥ ବଡ଼ ଭୋକ ହେଉଥିଲା ବୋଲି…

ସିକତା ॥ ଘରେ ବସି ବସି କେମିତ ଏତେ ଭୋକ ହଉଚ କେଜାଣି !
(ନୀରବତା, ଟିକିଏ ପରେ)

ସୀତାନାଥ ॥ ସଂତାପ ଫେରିଲାଣି ?

ସିକତା ॥ ନା ।

ସୀତାନାଥ ॥ କେତେଟା ବାଜିଲାଣି ?

ସିକତା ॥ (ଘଣ୍ଟା ଦେଖି) ଛ'ଟା ପନ୍ଦର ।

[ କନ୍ଦ କନ୍ଦ ସିକତା ଘର ଭିତରକୁ ଯାଇଚ୍ଛ । ପଚ୍ଛେ ପଚ୍ଛେ ସୀତାନାଥ । ମଞ୍ଚ ପୁଣି ଖାଲି, କିଛି ସମୟ ପରେ ବାହାରୁ ଆସିଛନ୍ତି ବର୍ଷା ଓ ପ୍ରେମଦତ୍ତ । ସେମାନଙ୍କ ପ୍ରବେଶ ସଙ୍ଗେ ସଙ୍ଗେ ଘର ଭିତରର ନିର୍ଜନତା ଭାଙ୍ଗି ଯାଇଚ୍ଛ ଏକ ଉଚ୍ଛଳ ହସ ଭିତରେ ।

ପୂର୍ବରୁ ବାଜୁଥିବା ସୀତାରର ସେଇ ଦ୍ରୁତ ଲୟରୁ ପୁଣି ଥରେ ବଜାଇ ହଆ ଯାଇପାରେ । ]

ବର୍ଷା ॥ (ନିଜକୁ ପ୍ରାୟ ସୋଫା ଉପରକୁ ଫୋପାଡ଼ି ଦେଇ)
ଓଃ ! ମାଈଁ ଗଡ୍ !
(ପୁଣି ବେଦମ୍ ହୋଇ ହସିବାରେ ଲଗିଲେ)

ପ୍ରେମଦତ୍ତ ॥ ତମେ ଏତେ ହସକୁଣ୍ଡ ବୋଲି ଜାଣି ନ ଥିଲି ।

ବର୍ଷା ॥ (ସେମିତି ହସି ହସି) ରାସ୍ତା ସାରା ତମେ ମତେ କୁତୁକୁତୁ କରୁଥିଲ ଯେ !

ପ୍ରେମଦତ୍ତ ॥ ଓଃ ! ବର୍ଷା । ତମେ ଟିକଏ ଆସ୍ତେ କୁହ । ଆମେ ବର୍ତ୍ତମାନ ଘର ଭିତରେ ।

ବର୍ଷା ॥ ବାପ୍‌ରେ ବାପ୍ ; ଆଉ୍ କେବେ ତମ କାର୍‌ରେ ବସିବିନି !··· ଦେହ ସାରା ଶୀତେଇ ଯାଉଚି ।

ପ୍ରେମଦତ୍ତ ॥ କିନ୍ତୁ ମୁଁ ତମକୁ ତ କୁତୁକୁତୁ କରିନି !

ବର୍ଷା ॥ ଆଉ କ'ଣ କରୁଥିଲ ଯେ ?

ପ୍ରେମଦତ୍ତ ॥ କୁହ, ମୁଁ କ'ଣ କରୁଥିଲି !

ବର୍ଷା ॥ ସତେକି ବଡ଼ ଗୋଟାଏ ଜ୍ୟୋତିଷ ଭଳି ମୋ' ହାତ ଦେଖିବାକୁ ଲଗିଲ ।

ପ୍ରେମଦତ୍ତ ॥ ତମ ପାପୁଲିଟା ସତରେ ଚମତ୍କାର ।

ବର୍ଷା ॥ ଏତେ ସମୟ କ'ଣ ଦେଖୁଥିଲ ଯେ ?

ପ୍ରେମଦତ୍ତ ॥ ଦେଖୁଥିଲି··· ତମେ ଲକ୍ଷ୍ମୀ ନା ସରସ୍ୱତୀ ।

ବର୍ଷା ॥ ଫୁଃ ! ତମେ ଜମାରୁ ମୋ' ହାତ ଦେଖୁନଥିଲ !

ପ୍ରେମଦତ୍ତ ॥ ଆଉ କ'ଣ କରୁଥିଲି ?

ବର୍ଷା ॥ ଡ୍ରାଇଭ୍ କରୁଥିଲ ।

ପ୍ରେମଦତ୍ତ ॥ ଡ୍ରାଇଭ୍ କରି କରି ମୁଁ ହାତ ଦେଖି ପାରେ ।

ବର୍ଷା ॥ ନୋ, ଆଇ ବେଟ୍ । ରଖିଲ ବାଜି ?

ପ୍ରେମଦତ୍ତ ॥ ବାଜି ପକେଇବା ପ୍ରଶ୍ନ ଉଠୁନି । ମୁଁ ଏକ୍‌ସ୍‌ପାର୍ଟ ଡ୍ରାଇଭର୍ ।

ବର୍ଷା ॥ ପଗୃଶିବା କାହାକୁ ?

ପ୍ରେମଦତ୍ତ ॥ ଏ କଥାଗୁଡ଼ା କାହାରିକୁ ପଚାରି ଯାଏନି !

॥ ତେଇଶି ॥

ବର୍ଷା ।। ଖାଇ... ଖାଇ... (ପଛକୁ ଚାହିଁ) ଖାଇ ବୋଧହୁଏ କୁଆଡେ ଯାଇଚ । ଆସିଲେ ତାକୁ ପଚାରିବା ।

ପ୍ରେମଦତ୍ତ ।। କେତେଟା ଖାଇ ?

ବର୍ଷା ।। ଦୁ'ଟା !

ପ୍ରେମଦତ୍ତ ।। କ'ଣ ସବୁ କରୁଛନ୍ତି ?

ବର୍ଷା ।। ଜଣେ ସେକ୍ରେଟାରିଏଟ୍‌ରେ ଏବଂ ଅନ୍ୟ ଜଣେ ବମ୍ବେ ଯିବା ଅପେକ୍ଷାରେ ।

ପ୍ରେମଦତ୍ତ ।। ବମ୍ବେ କାହିଁକି ଯିବ ?

ବର୍ଷା ।। ଫିଲ୍ମରେ ପାର୍ଟ କରିବ ।

ପ୍ରେମଦତ୍ତ ।। ମୋ' ସାଙ୍ଗରେ ଟିକିଏ ପରିଚୟ କରେଇ ଦେବ ?

ବର୍ଷା ।। ନିଶ୍ଚୟ ।

ପ୍ରେମଦତ୍ତ ।। (ଟିକିଏ ପରେ) ଆଉ ହସ୍ ମାଡୁନ ?

ବର୍ଷା ।। ନା, ମୁଁ ଠିକ୍ ହେଇଗଲି ।

ପ୍ରେମଦତ୍ତ ।। ଆଚ୍ଛା !

ବର୍ଷା ।। ହଁ । (ଟିକିଏ ରହି) ମତେ ଗୋଟାଏ କାହାଣୀ କୁହ ।

ପ୍ରେମଦତ୍ତ ।। କି କାହାଣୀ ?

ବର୍ଷା ।। ଦୁଃଖ କାହାଣୀ ।

ପ୍ରେମଦତ୍ତ ।। ଟ୍ରାଜେଡ଼ି ?

ବର୍ଷା ।। ଭୟଙ୍କର ଟ୍ରାଜେଡ଼ି !

ପ୍ରେମଦତ୍ତ ।। (କିଛି ସମୟ ବର୍ଷାକୁ ଚାହିଁ) ଆଚ୍ଛା ବର୍ଷା ! ତମ ସାଙ୍ଗରେ ପରିଚୟ ହେଇ ପ୍ରାୟ ଦେଢମାସ ହେଇଗଲା, ନାହିଁ ?

ବର୍ଷା ।। ଓଃ ! ନୋ, ଏଇଟା ଟ୍ରାଜିକ୍ କାହାଣୀ ନୁହେଁ ।

ପ୍ରେମଦତ୍ତ ।। କିନ୍ତୁ ତମ ସାଙ୍ଗରେ ଦେଖା ହୋଇ ନିଶ୍ଚୟ ଦେଢ ମାସ ହେଇଚ ?

ବର୍ଷା ।। ହଁ, ସେଇଠୁ କ'ଣ ହେଲା ?

ପ୍ରେମଦତ୍ତ ।। ଏଇ ଦେଢ଼ ମାସ ଭିତରେ ମୁଁ ତମକୁ ଭଲ ପାଇ ବସିଲିଣି ।

ବର୍ଷା ।। ମୁଁ ବି ତମକୁ କମ୍ ଭଲ ପାଇନି !

ପ୍ରେମଦତ୍ତ ।। ତମକୁ ଭଲ ପାଇ ମୁଁ ମୋର କଂଟ୍ରାକ୍ଟରୀ ଛାଡ଼ି ଦେଲିଣି ।

ବର୍ଷା ।। ତମକୁ ଭଲ ପାଇ ମୁଁ ଜୋସେଫକୁ ଛାଡ଼ି ଦେଇଚି ।

ପ୍ରେମଦତ୍ତ ।। ତମକୁ ଭଲ ପାଇ ମୁଁ ପ୍ରଭୁ ଯୀଶୁଙ୍କୁ ଛାଡ଼ିଦେଲି ।

ବର୍ଷା ।। ତମକୁ ଭଲ ପାଇ ମୁଁ ମୋର ନାଚ, ଗୀତ ଛାଡ଼ି ଦେବାକୁ ଯାଉଚି ।

ପ୍ରେମଦତ୍ତ ।। ତମେ ବିଶ୍ୱାସ କର ବର୍ଷା ! ତମକୁ ଭଲ ପାଇ ମୁଁ ମୋର ରେଜାକୁଲି ମାନଙ୍କୁ ବିଦା କରିଦେବା ପାଇଁ ବସିଚି ।

ବର୍ଷା ।। ଥାଉ, ଥାଉ, ଏତେ ଭଲ ପାଇଲେ ପୁଣି ବୋର୍ ହୋଇଯିବା ।

ପ୍ରେମଦତ୍ତ ।। ତା'ହେଲେ ଏଥକରେ ଥାଉ ।

ବର୍ଷା ।। ତା'ହେଲେ ବର୍ତ୍ତିମାନ କ'ଣ କରାଯିବ ?

ପ୍ରେମଦତ୍ତ ।। ତମ ହାତ ଦେଖିବା ଆସ ।

ବର୍ଷା ।। ଓଃ ! ନୋ ! ପୁଣି ମତେ ତମେ ହସେଇବ !

ପ୍ରେମଦତ୍ତ ।। କିନ୍ତୁ ହାତ ଦେଖିବା ସହିତ ହସିବାର କୌଣସି ସମ୍ପର୍କ ନାହିଁ ।

ବର୍ଷା ।। କାହିଁକି ନାହିଁ ?

ପ୍ରେମଦତ୍ତ ।। ତମେ ଏମିତି ହସିଲେ ଅନ୍ୟମାନେ ଆମକୁ ଦେଖି ହସିବେ !

ବର୍ଷା ।। ୟେସ୍, ମୁଁ ଜାଣେ,

ପ୍ରେମଦତ୍ତ ।। କ'ଣ ଜାଣ ?

ବର୍ଷା ।। ଭାଇ ଆଉ ଭାଉଜ ଆଗେ ଏମିତି ହସୁଁଥିଲେ !

ପ୍ରେମଦତ୍ତ ।। ଏସ୍ବା ବୁଝିଲି ?

ବର୍ଷା ।। ଏବଂ ମୁଁ କ'ଣ ହେଲା ବୋଲି ପଚାରିଲେ କେହି କହନ୍ତି ନାହିଁ ।

ପ୍ରେମଦତ୍ତ ।। ବର୍ଷା !

ବର୍ଷା ।। ମୁଁ କିନ୍ତୁ ଯେ କୌଣସି ହସ କଥାଟେ ଶୁଣିଲେ ସମସ୍ତଙ୍କୁ କହୁଥାଏ !

ପ୍ରେମଦତ୍ତ ।। କିନ୍ତୁ ତମେ ଯୋଉ ହସ କଥା କହୁଚ, ସେ ଗୁଡ଼ା ଖରାପ, ଅଭଦ୍ର କଥା । ଅମଭଳି ବଡ଼ ଲୋକମାନେ ସେ ଗୁଡ଼ା ଶୁଣି ହସନ୍ତି ନାହିଁ ।

ବର୍ଷା ।। ଆମେ ନ ହସିଲେ ନାହିଁ, କିଏ କେହେଲେ ଜଣେ ହସୁଥିବ ତ ?

ପ୍ରେମଦତ୍ତ ।। ସେମାନେ ମାଙ୍କଡ଼, ବାଘ, ସାପ, ପ୍ରେମ ଏକ ପବିତ୍ର ଜିନଷ ବୋଲି ସେମାନେ ଜାଣନ୍ତି ନାହିଁ ।

ବର୍ଷା ।। ଓ !!......

ପ୍ରେମଦତ୍ତ ।। ତମେ ତ ପିଲାଦିନର ସେ ପ୍ରେମ କାହାଣୀ ସବୁ ପଢ଼ିଥିବ ?

ବର୍ଷା ।। ବଗ ଅଉ ବିଲୁଆ କଥା ?

ପ୍ରେମଦତ୍ତ ।। ହାଃ... ହାଃ... ହାଃ... ହାଃ...

ବର୍ଷା ।। (ରାଗିଯାଇ) ହସୁଚ କ'ଣ ମ !

ପ୍ରେମଦତ୍ତ ।। ହାଃ...ହାଃ...ହାଃ...ହାଃ...

ବର୍ଷା ।। ସେମିତ ହେଲେ ତମ ସାଙ୍ଗରେ ମୋର କଟି ।

ପ୍ରେମଦତ୍ତ ।। ତମର ପିଲାଳିଆମି ଆହୁରି ଯାଇନି ।

ବର୍ଷା ।। କାହିଁକି ମ ? ମୁଁ କ'ଣ ଏମିତ ଛୁଆଟେ ?

ପ୍ରେମଦତ୍ତ ।। କେଦାର ଗୌରୀ କାହାଣୀ ପଢ଼ିଛ ?

ବର୍ଷା ।। ଦୁଃଖ କାହାଣୀଟେ !

ପ୍ରେମଦତ୍ତ ।। ତମେ ଦୁଃଖ କାହାଣୀ ଶୁଣିବାକୁ ଚାହିଁଥିଲ ?

ବର୍ଷା ।। ମତେ ସେ କାହାଣୀଟା ପଢ଼ିଲେ ରାଗ ମାଡ଼େ ।

ପ୍ରେମଦତ୍ତ ।। କିନ୍ତୁ ସେଇଟା ଟ୍ରାଜିକ୍ !

ବର୍ଷା ।। କ'ଣ ଦରକାର ଥିଲା ଦି'ଜଣଙ୍କର ଏମିତ ମରିବା ପାଇଁ ?

ପ୍ରେମଦତ୍ତ ।। ସେମିତ ପ୍ରାଣବଳି ଦେବାରେ ପ୍ରେମର ପରାକାଷ୍ଠା ।

ବର୍ଷା ।। ହାଃ···ହାଃ···ହାଃ···

ପ୍ରେମଦତ୍ତ ।। ହସିଲ ?

ବର୍ଷା ।। ତମେ କହିଲେ ଅମ କଲେଜର ଏମ୍ଃ ଆଇଃ ଏଲ୍ଃ ସାର୍ କହିଲ ଭଳି ଲାଗୁଚ ।

ପ୍ରେମଦତ୍ତ ।। ନନ୍‌ସେନ୍‌ସ !

ବର୍ଷା ।। ତମ ପୁଅଗୁଡ଼ା ସବୁ ସ୍ୱାର୍ଥପର ।

ପ୍ରେମଦତ୍ତ ।। କିଏ କହୁଥିଲା ?

ବର୍ଷା ।। କିଏ କାହିଁକି କହିବ ମ ? ମୁଁ କ'ଣ ପୁଅ ମାନଙ୍କୁ ଚହ୍ନି ପାରିଲା ଭଳି ବଡ଼ ହୋଇନି କି ?

ପ୍ରେମଦତ୍ତ ।। ନା, ସେ କଥା ନୁହେଁ ଯେ··· ତେବେ ମନ୍ତ୍ରବ୍ୟଟା ନିଶ୍ଚୟ ତମ କଲେଜର କିଏ ଦେଇଥିବ !

ବର୍ଷା ।। ଦେଇ ଥାଇପାରେ ।

ପ୍ରେମଦତ୍ତ ।। ମୁଁ ସେ କଥା କହୁଚ ।

ବର୍ଷା ।। ମୁଁ କହୁଥିଲି ତମେ ସ୍ୱାର୍ଥପର ।

ପ୍ରେମଦତ୍ତ ।। କାହିଁକି ? କେମିତି ?

ବର୍ଷା ।। ତମେ ଯାହା କହୁଚ ସବୁ ଠିକ୍; ଅଥଚ ମୁଁ କହିଲେ ପିଲାଳିଆ ହୋଇ ଯାଉଚି ।

ପ୍ରେମଦତ୍ତ ।। ଓଃ ! ଏଇକଥା ? ମୁଁ ଭାବୁଥିଲି···

ବର୍ଷା ।। କ'ଣ ଭାବୁଥିଲ ?

ପ୍ରେମଦତ୍ତ ।। ନା··· ମାନେ··· କିଛି ନୁହଁ ।

ବର୍ଷା ।। ତମେ ମିଛ କହୁଚ । ମିଛୁଆ ମାନଙ୍କ କାନ ମୋଡା ଯାଏ ।

ପ୍ରେମଦତ୍ତ ।। ଏଁ ! ତମେ ମୋ' କାନ ମୋଡ଼ିବ ନା କ'ଣ ?

ବର୍ଷା ।। ନା, କାରଣ ତମେ ବଡ ହୋଇଗଲଣି । ପିଲାଦିନେ ଭାଇ ମୋର କାନ ମୋଡ଼ି ଦେଉଥିଲା । ଏବେ ଆଉ ମୋଡୁନି । କାରଣ ମୁଁ ବଡ ହୋଇ ଯାଇଛି ।

।। ସ୍ୱଚ୍ଛେଇଣି ।।

ପ୍ରେମଦତ୍ତ ।। ସତେ ?

ବର୍ଷା ।। ହଁ,

ପ୍ରେମଦତ୍ତ ।। ଏଣିକି ତା’ହେଲେ ତମେ ଯାହା କହୁଚ ସବୁ ସତ ବୋଲି ଭାବିବା । (ହସିଛି) ମୁଁ ତାହାହେଲେ ଆସୁଚି ।

ବର୍ଷା ।। ଆଜି ନୂଆ କରି ଆସିଚ, ଏତେ ଶୀଘ୍ର ଚାଲିଯିବ ?

ପ୍ରେମଦତ୍ତ ।। ପୁଣି ଦିନେ ଆସିବି ।

ବର୍ଷା ।। ପୁଣି କେବେ ଆସିବ ଯେ ? ଏତେ ଦିନ ହେଲା ଡାକି ଡାକି ତ ଶେଷରେ ଆଜି ଆସିଚ ।

ପ୍ରେମଦତ୍ତ ।। ଘରକୁ ଆସିଗଲେ କ’ଣ ସ୍ନେହ ବେଶୀ ବଢିଯାଏ ?

ବର୍ଷା ।। ନାହିଁ ଯେ... ! ତମେ ପାଖରେ ଥିଲେ ଭଲ ଲାଗେ ।

ପ୍ରେମଦତ୍ତ ।। ଘରେ କାହାରିକୁ ଦେଖୁନି ଯେ... ?

ବର୍ଷା ।। ଘରେ ଆଉ କିଏ କି ? ବାପା ତ ଅଥର୍ବ ହୋଇ ଗଲେଣି, ପାରାଲିସିସ୍ । ବାଡ଼ି ଖଣ୍ଡେ ଧରି ବହୁତ କଷ୍ଟରେ ଚାଲନ୍ତି ।

ପ୍ରେମଦତ୍ତ ।। ବାପା କୋଉଠି ?

ବର୍ଷା ।। (ଝରକା ପଛପଟକୁ ହାତ ଦେଖାଉଛି)

ପ୍ରେମଦତ୍ତ ।। ସେଇଠି ? ଘରର ପଛ ପଟଟାରେ ସେ କ’ଣ କରୁଛନ୍ତି ?

ବର୍ଷା ।। ତାଙ୍କୁ ସେଇ ପଛ ବାରଣ୍ଡାଟା ଭଲ ଲାଗେ । ମୁଁ ପଚାରିଲେ କୁହନ୍ତି ‘ବୁଢା ହେଲିଣି, ଏଣିକି ପଛ ଘରଟ ହିଁ ମୋ’ ପାଇଁ ଉପଯୁକ୍ତ । ତମେ ସବୁ ପିଲା, ଆଗ ଘରେ ରହି ମଜା କର ।’

ପ୍ରେମଦତ୍ତ ।। ଇଣ୍ଟରେଷ୍ଟିଂ ।

ବର୍ଷା ।। ବାପାଙ୍କ ରିଟାୟାର୍‌ମେଣ୍ଟ୍ ପରେ ଆମେ ସବୁ ଭାଇଙ୍କ ପାଖରେ ରହୁଚୁ । ସଂତାପ ଭାଇ, ତମେତ ଭାଉଜଙ୍କୁ ଦେଖିଛ !

ପ୍ରେମଦତ୍ତ ।। ସିକତା !

ବର୍ଷା ।। ହଁ, ସନ୍ତାପ ଭାଇ ଆଉ ସବିତ୍ର ଭାଇଙ୍କୁ ଦେଖିନା ପରି ! ଟିକିଏ ବସିଯାଅ, ସେମାନେ ଆସିବା ସମୟ ହୋଇ ଗଲଣି !

ପ୍ରେମଦତ୍ତ ॥ ସିକତା !

ବର୍ଷା ॥ ହଁ, ସନ୍ତାପ ଭାଇ ଆଉ ସବ୍ରତ ଭାଇଙ୍କୁ ଦେଖିନା ପରା ! ଟିକିଏ ବସିଯାଅ । ସେମାନେ ଆସିବା ସମସ୍ତ ହୋଇ ଗଲାଣି !

ପ୍ରେମଦତ୍ତ ॥ ମତେ ଦେଖି ସିଏ କିଛି ଭାବିବେ ନାହିଁ ତ ?

ବର୍ଷା ॥ ନା- ନା, ମୋଟେ ନୁହେ ।

ପ୍ରେମଦତ୍ତ ॥ ତମେ ଆମ ବାହାଘର ବିଷୟରେ କିଛି ଇଙ୍ଗିତ ଦେଇଚ ?

ବର୍ଷା ॥ ନା, ବାପା ଜାଣନ୍ତି, ଝିଅର ବୟସ ହେଇଚି ଯେତେବେଳେ ବର ଯୋଗାଡ଼ କରିବା ଦାୟିତ୍ୱ ତାର ଅଛି ।

ପ୍ରେମଦତ୍ତ ॥ ତମର ବୟସ ହେଇ ଗଲାଣି ତା'ହେଲେ ?

ବର୍ଷା ॥ ଓ... ପୁଣି ତମେ ଜୋକ୍ କଲ ! (ଅଳି କଲା ଭଳି) ସେମିତି ହେଲେ...

ପ୍ରେମଦତ୍ତ ॥ କଣ ? ଏସ୍ପାଙ୍କ ? ହାଃ... ହାଃ... ହାଃ...

ବର୍ଷା ॥ ଫାଜିଲ ହେଉଚ ? ଦଣ୍ଡ ପାଇବ ।

ପ୍ରେମଦତ୍ତ ॥ କି ଦଣ୍ଡ ? ବନ୍ଧା ହାଜତ୍... ।

ବର୍ଷା ॥ (ହସି ହସି) ପିଲାଦିନେ ସ୍କୁଲକୁ ଯିବିନି ବୋଲି ଥରେ ଘରେ ଯାଚି ତୁଣ୍ଡ କଲି ବୋଲି ବାପା ମୋ' ମୁଣ୍ଡରେ ବୋଝେ କୋଇଲା ନଦ ଦେଇ ବାଡ଼ ପଟେ ଠିଆ କରେଇ ଦେଇଥିଲେ । ଦିନ ସାରା ସେମିତି ଠିଆ ହୋଇ ରହିଲି ଆଉ କାନ୍ଦିଲି । ରାତି ଯେମିତି ହେଲା— ମତେ ଭୀଷଣ ଡ଼ର ମାଡ଼ିଲା ।

ପ୍ରେମଦତ୍ତ ॥ ଅନ୍ଧାରକୁ ତମେ ଡର ବୋଧେ !

ବର୍ଷା ॥ ଆଜକାଲି ଆଉ ଅନ୍ଧାରକୁ ମୁଁ ଜମା ଡରୁନି, ବଡ଼ ହେଇ ଗଲିଣି କିନା !

ପ୍ରେମଦତ୍ତ ॥ ଓ ! ଆଇ ସି । ବଡ଼ ହେଇଗଲେ ଅନ୍ଧାରକୁ ଆଉ ଡ଼ରନ୍ତି ନାହିଁ ପରା ?

ବର୍ଷା ॥ ତମେ କଣ ଅନ୍ଧାରକୁ ଡରୁଚ ?

ପ୍ରେମଦତ୍ତ ॥ ଅନ୍ଧାର ମୋତେ ଭଲ ଲାଗେ ।

ବର୍ଷା ॥ ଆଉ କଣ କଣ ତମକୁ ଭଲ ଲାଗେ ।

ପ୍ରେମଦତ୍ତ ॥ ପାର୍ଟି, ରେଷ୍ଟୋରାଁ, ଫୁଲ, ମଦ, ଏବଂ...

ବର୍ଷା ॥ ଏବଂ... ?

ପ୍ରେମଦତ୍ତ ॥ ଉଁମ୍...

ବର୍ଷା ॥ କ'ଣ ଏମିତି କୁନ୍ଥେଇ ହଉଚ ମ ? ଏତକୁଟିଏ ହେଲଣି, ଆହୁରି ଲାଜ କରୁଚ ?

ପ୍ରେମଦତ୍ତ ॥ ଏବଂ 'ତମକୁ' ।

ବର୍ଷା ॥ ଫାଜିଲ୍, ଅଭଦ୍ର ।

ପ୍ରେମଦତ୍ତ ॥ ପଚ୍ଚରୁ ଆଉ କଣ କଣ ଭଲ ଲାଗେ ?

ବର୍ଷା ॥ ଆଉ କଣ ଭଲ ଲାଗେ ?

ପ୍ରେମଦତ୍ତ ॥ ଡ୍ରାଇଭିଂ ।

ବର୍ଷା ॥ ଅଭଦ୍ର, ମିଛୁଆ । ତମେ ବି ଅନ୍ଧାରକୁ ଡରୁଚ !

ପ୍ରେମଦତ୍ତ ॥ ମୋଟେ ନୁହେଁ ।

ବର୍ଷା ॥ ଦେଖିବା... ? ଆଲୁଅ ଲିଭେଇ ଦି... ?
( ଆଗେଇ ଯାଇ ସୁଇଚ୍ ଅଫ୍ କରେଚ )

ପ୍ରେମଦତ୍ତ ॥ ବର୍ଷା !

ବର୍ଷା ॥ (ହସିବା ଶବ୍ଦ)

ପ୍ରେମଦତ୍ତ ॥ ବର୍ଷା । ଆଲୁଅ ଜଳାଅ, କିଏ ଦେଖିଲେ କ'ଣ ଭାବିବ ?

ବର୍ଷା ॥ (ଆଲୁଅ ଲଗେଇ) ହାଁ ମିଛୁଆ ବୋଲି ଧରା ପଡ଼ିଗଲ !

ପ୍ରେମଦତ୍ତ ॥ କେମିତି ?

ବର୍ଷା ॥ ନାଇଁ, ନାଇଁ... ସତେତ ତମେ ଅନ୍ଧାରକୁ ଡରୁନା ?

ପ୍ରେମଦତ୍ତ ॥ କେମିତି ହଠାତ୍ ଏତେବଡ କଥାଟେ ଜାଣି ପଦେଇଲ ?

ବର୍ଷା ॥ ଆସିଲାବେଳେ କାର୍‌ର ଭିତରେ ପଟ ଲାଇଟ୍‌ଟା ଅଫ୍ କରିଦେଲ ।

ପ୍ରେମଦତ୍ତ ॥ ହେଉଛି ଅଳିଆ କଥା । କନ୍ୟାଙ୍କ ଭିତରେ ଆଙ୍ଗୁଠିଟା ଫିଟ୍ କରିଦେଲେ ସାମନାର ଆଙ୍ଗୁଠିଟା ଭାଙ୍ଗି ଗଲେ । ସେଇଟା ଭଲ ଦେଖେ ।

ବର୍ଷା ॥ ନା, ମିଛ ।

ପ୍ରେମଦତ୍ତ ॥ ମିଛ ?

ବର୍ଷା ॥ ପ୍ରମାଣ ଦେଇ ପାରିବ ?

ପ୍ରେମଦତ୍ତ ॥ ହାଓ ସିଲ୍ଲି ! ତମେ ଯେ କୌଣସି ଡ୍ରାଇଭରକୁ ପଚାର ସିଏ ନିଶ୍ଚୟ ଏଇ କଥା କହିବ !

ବର୍ଷା ॥ ନା··· ସବୁ ମିଛ, ଲାଇଟ୍ ଅଫ୍ କରିଦେଇ ତମେ ମତେ କୁତୁ କୁତୁ କରିବା ପାଇଁ ସୁବିଧା ପାଇଲ ।

ପ୍ରେମଦତ୍ତ ॥ (ଫୁସ୍ ଫୁସ୍ ହେଇ) ଆସ୍ତେ- ଆସ୍ତେ ! ସେ ପଟେ ବାପା ଆଉ ଭାଉଜ ।

ବର୍ଷା ॥ ଥାଆନ୍ତୁ, ଆମେ କଣ ଅଭଦ୍ର କଥା ହଉଛେ କି ?

ପ୍ରେମଦତ୍ତ ॥ ନାଇଁ ଯେ... ତଥାପି ଏତେ ବଡ ପାଟିରେ···

ବର୍ଷା ॥ ଘରେ ମୁଁ ଖୁବ୍ ବଡ଼ ପାଟି କରେ । ସଂଭବତଃ ସେଇ ସେଇଥି ପାଇଁ ମତେ ଚଣ୍ଡୀ ବୋଲି କୁହେ ।

ପ୍ରେମଦତ୍ତ ॥ ଚଣ୍ଡୀ ହୁଅ କି ନ ହୁଅ, 'ହୁଣ୍ଡୀ' ନିଶ୍ଚୟ ।

ବର୍ଷା ॥ ଆଁ··· ଡାକିବି ଭାଉଜଙ୍କୁ ?

ପ୍ରେମଦତ୍ତ ॥ ଭାଉଜ କ'ଣ ମୋର କାନ ମୋଡ଼ି ଦେବେ ନା ଗୋଟେ ଗୋଡରେ ଠିଆ କରେଇ ଦେବେ ?

ବର୍ଷା ॥ ତମେ ବଡ ହେଇ ଗଲଣି, ସେଥିପାଇଁ ତମର ଡ଼ର ଛୁଟିଗଲଣି ।

ପ୍ରେମଦତ୍ତ ॥ ଓହୋ, ବୁଝିଲି ।

ବର୍ଷା ॥ (ଟିକିଏ ନୀରବତା ପରେ) ପ୍ରେମଦତ୍ତ !

ପ୍ରେମଦତ୍ତ ॥ ଉଁ··· ?

ବର୍ଷା ॥ ଆମେ ବାହା ହେଇଗଲା ପରେ ତମେ ମତେ ଏମିତି ଡରେଇବ ?

॥ ଏକତରଫି ॥

ପ୍ରେମଦତ୍ତ ।। କେମିତ ?

ବର୍ଷା ।। ଅନ୍ଧାର ଘରେ ?

ପ୍ରେମଦତ୍ତ ।। କୋଉ ଅନ୍ଧାର ଘରେ ?

ବର୍ଷା ।। ତମର ସେଇ ଯୋଉ ଶାନ୍ତ ନଗର ଡ଼' ମହଲଟାରେ ! ଆମେ ବାହା ହୋଇ ସାରିଲା ପରେ ସେଇଠି ରହିବାତ ?

ପ୍ରେମଦତ୍ତ ।। ହଁ ତମର ଯେମିତ ଇଚ୍ଛା !

ବର୍ଷା ।। ଓ୍ୱାଣ୍ଡରଫୁଲ୍ ! ଖୁବ୍ ଚମତ୍କାର ଘରଟେ ହୋଇଚ ନାଇଁ ?

ପ୍ରେମଦତ୍ତ ।। ମଜବୁତ୍ ମଧ୍ୟ ।

ବର୍ଷା ।। ଉଁଃ ! ମଜବୁତ୍ ମଧ୍ୟ ! କଂଟ୍ରାକ୍ଟର ଲୋକତ··· ଖାଲି ବାଲିରେ ଘରଟେ ତୋଳି ଦେଇଥିବ ?

ପ୍ରେମଦତ୍ତ ।। ଇଂଜିନିୟରିଂ ପଢିଲା ଭଳି କହୁଚ ? ଆମେ ରହିବା··· ସେଇଟା ପୁଣି ବାଲି ଘର୍ ? ଇଂପସିବଲ୍ !!

ବର୍ଷା ।। ଆମେ ସେ ଘରକୁ ଗଲାପରେ ଖାଲି ନୂଆ··· ନୂଆ କଣ୍ଢେଇରେ ସେ ଘରଟାକୁ ସଜେଇବା ।

ପ୍ରେମଦତ୍ତ ।। 'ଡଲସ୍ ହାଉସ୍' କରିବ ?

ବର୍ଷା ।। କଣ୍ଢେଇରେ ମୋର ଭାରି ଶରଧା । ପିଲାଦିନେ ମୁଁ ଗୋଟେ ସାଲ୍ୟୁଟ୍ କରୁଥିବା ଜବାନ୍‌କୁ ଭଲ ପାଉଥିଲି । ଦିନେ ସବୁତ୍ ଭାଇ ତାକୁ ନେଇ ଭାଙ୍ଗି ଦେଇଥିଲା । ସେଇଠ ମୁଁ ତାର ହାତଟାକୁ ଗ୍ଧେବେଇ ଦେଇଥିଲି ?

ପ୍ରେମଦତ୍ତ ।। ବାପରେ ! ମତେ ବି ବାହା ହେଲା ପରେ ଏମିତ ଗ୍ଧେବେଇବ ?

ବର୍ଷା ।। କାହିଁକି (ହସି ହସି) ତମେ କ'ଣ ମୋ' କଣ୍ଢେଇ ଘର ଭାଙ୍ଗିବ ?

ପ୍ରେମଦତ୍ତ ।। ଅବଶ୍ୟ··· ନା··· ।

ବର୍ଷା ।। ଆଚ୍ଛା ପ୍ରେମଦତ୍ତ ! ବୈଜ୍ଞାନିକମାନେ ଏତେ କଥା କରୁଛନ୍ତି, ଗୋଟେ କଣ୍ଢେଇ ଗଛ ଆବିଷ୍କାର କରିପାରୁ ନାହାନ୍ତି ?

ପ୍ରେମଦତ୍ତ ।। ଏଣିକି ସେମାନଙ୍କୁ କହିବା ।

ବର୍ଷା ।। କାହାକୁ କହିବ ?

ପ୍ରେମଦତ୍ତ ।। ବୃଦ୍ଧକୁ !

ବର୍ଷା ।। (ଅପ୍ରସ୍ତୁତ ହୋଇ) ଆଁ... (ରାଗିଲା ଭଳି) ତମେ ମତେ କାହିଁକି ବୃଦ୍ଧକୁ କହିଲ ?

ପ୍ରେମଦତ୍ତ ।। (ଚଡେଇ) ଓଃ ! !

ବର୍ଷା ।। (କାନ୍ଦିବା ଅଭିନୟ)

ପ୍ରେମଦତ୍ତ ।। କାନ୍ଦ, ଆସିଲ ପାଖକୁ; ତମ ହାତ ଦେଖିବା; ତମେ ଓଲ୍ଡ କି ଗାର୍ଲ ?

ବର୍ଷା ।। ( ପାଖକୁ ଆସୁ ଆସୁ ) ଫାଷ୍ଟଇଅର୍ ଡ଼ିଗ୍ରୀରେ ତିନିଥର ଫେଲ୍ ହୋଇଥିଲି ।

ପ୍ରେମଦତ୍ତ ।। ଆସ, ସେଇଆ ଦେଖିବା ।

ବର୍ଷା ।। (ହାତ ବଢେଇ ଦେଇ) ସତେମ୍, କିଏ ମୋ ହାତ ଦେଖିଲେ ମତେ ଖୁବ ଭଲ ଲାଗେ ।

ପ୍ରେମଦତ୍ତ ।। ସେଇଥି ପାଇଁ ତ ଦେଖୁଚି ।

ବର୍ଷା ।। କିଛି ପଢା ପଢି କରିଚି ନା ମିଛୁଟାରେ ମ ?

ପ୍ରେମଦତ୍ତ ।। ପରୀକ୍ଷା ପ୍ରାର୍ଥନୀୟ ।

ବର୍ଷା ।। କହିଲ ଦେଖି ?ଏସ୍ତୁ – ! କୁରୁ କୁରୁ କରିବନି କହୁ !

ପ୍ରେମଦତ୍ତ ।। ତମେ କେବେ 'ମଶୋରୀ' ଯାଇଥିଲ ?

ବର୍ଷା ।। ନାଁ ତ !

ପ୍ରେମଦତ୍ତ ।। ମଶୋରୀର ସେଇ ସରୁ ସରୁ ରାସ୍ତାରେ...

ବର୍ଷା ।। କ'ଣ ମୋ ହାତରେ ସେଇଆ ଲେଖା ହୋଇଚି ?

ପ୍ରେମଦତ୍ତ ।। ସେମିତିତ ଜଣା ପଡୁଚି । ସାଙ୍ଗରେ ମୁଁ ବି ଥିଲି ନା କ'ଣ ?

ବର୍ଷା ।। ମିଛୁଆ ।

ପ୍ରେମଦତ୍ତ ।। ଆମେ ସେଇ ସରୁ ସରୁ ରାସ୍ତା ଉପରେ ଏବଂ ତଳେ ଫୁଟିଥିବା ଅଜସ୍ର ଫୁଲ ଦେଖୁ ଦେଖୁ ରାସ୍ତା କଡରେ ଗ୍ରେଟିଆ ଗ୍ରେଟିଆ ବେଞ୍ଚ ଉପରେ ବସୁଥିଲେ ।

।। ତେଢଣି ।।

ବର୍ଷା ।। ତା'ପରେ ?

ପ୍ରେମଦତ୍ତ ।। ତା'ପରେ ଅମେ ଯାଇ ପହଞ୍ଚିଲେ 'ହୋଟେଲ ହିମାଳୟ'ରେ । ହୋଟେଲ ହିମାଳୟ, ନିର୍ଜନ କୋଠରି, ମଳ ଅଲୁଅ, ଫିକା, ଆଗରେ ଦୁଇ ପେଗ୍ ସ୍କଚ୍ ହୁଇସ୍କି । ତମେ ଟିକିଏ, ମୁଁ ଟିକିଏ !

ବର୍ଷା ।। ମୁଁ ଟିକିଏ ? ଛି··· ! (କିନ୍ତୁ ଆଖି ତାର ଠିକ୍ ମଦ ପିଇଲା ଭଳି ଢୁଳୁଥିଲା) ।

ପ୍ରେମଦତ୍ତ ।। ତା'ପରେ ତମେ ବେହୋସ୍ ହୋଇ ପଡ଼ିଲ ।

ବର୍ଷା ।। ଆଉ ତମେ ?

ପ୍ରେମଦତ୍ତ ।। ଶୁଣ, ତମେ ପିନ୍ଧିଥାଅ ଖଣ୍ଡେ ମିନି ଫ୍ରକ୍ !

ବର୍ଷା ।। ହାଃ··· ହାଃ··· ହାଃ··· ମିନି !

ପ୍ରେମଦତ୍ତ ।। ମଣୋଗିର ସେ ପାର୍ବତ୍ୟ ହୋଟେଲରେ କାହିଁକି କେଜାଣି ତମେ ମନେହେଲ ମୋ'ର 'ମିରାଣ୍ଡା'··· !

ବର୍ଷା ।। ହାଓ ନାଇସ୍ !

ପ୍ରେମଦତ୍ତ ।। ତା'ପରେ ମୁଁ ମଧ୍ୟ ବେହୋସ ହୋଇ ପଡ଼ିଲି ତମ ପାଖରେ ।

ବର୍ଷା ।। ତା'ପରେ ?

ପ୍ରେମଦତ୍ତ ।। ଆଉ ବିଶେଷ କିଛି ହାତଟାରୁ ଜଣା ପଡୁନି ତ !

ବର୍ଷା ।। ତମେ କହୁଛ ଠକ, ମିଛୁଆ, ଏଇଟା ହାତ ଦେଖା ନୁହେଁ, ମିଛ, ମିଛ ସ୍ୱପ୍ନଟେ !

ପ୍ରେମଦତ୍ତ ।। (ଖୁବ୍ ଜୋରରେ) ହାଃ··· ହାଃ··· ହାଃ··· (ହସରେ ଯୋଗ ଦେଇଛି ବର୍ଷା) ।

ବର୍ଷା ।। ଧରା ପଡ଼ିଗଲ ।

[ ବାହାରୁ ଆସିଛନ୍ତି ସ୍ୱପ୍ନ ଭାଙ୍ଗିବା ପାଇଁ ସବ୍ରତ ଓ ଜୋସେଫ । ସବ୍ରତ ଆଗେ ଆଗେ ]

ସବ୍ରତ ।। ଏଇତ ବର୍ଷା !

ପ୍ରେମଦତ୍ତ ।। (ଚମକି) କିଏ ?

ବର୍ଷା ॥ ଆଇ ! ପ୍ରେମଦତ୍ତ ! ଇଏ ମୋର ସବତ୍ ଭାଇ ।

ପ୍ରେମଦତ୍ତ ॥ ଆଉ ସିଏ ?

ବର୍ଷା ॥ ସିଏ······

ଜୋସେଫ ॥ ଜୋସେଫ ମହାପାତ୍ର ।

ପ୍ରେମଦତ୍ତ ॥ ଗ୍ଲାଡ ଟୁ ମିଟ୍ ୟୁ ।

ଜୋସେଫ ॥ ବର୍ଷା !

ବର୍ଷା ॥ ତମେ କେତେବେଳେ ଆସିଲ ?

ସବତ୍ ॥ ଅଧଘଣ୍ଟାଏ ହେଲା ଆସି ବସିଛନ୍ତି ।

ଜୋସେଫ ॥ ଆମେ ଟିକିଏ ବାହାରକୁ ଯାଇଥିଲୁ ।

ସବତ୍ ॥ ତମେ ବସ ନମ୍ବରୱାନ୍ । ମୁଁ ଭିତରୁ ଆସୁଛି (ଯାଇଛି) ।

ଜୋସେଫ ॥ ବର୍ଷା !

ବର୍ଷା ॥ ମୁଁ ଜାଣେ ତମେ ମୋ' ଉପରେ ରାଗିଚ ।

ଜୋସେଫ ॥ ସହିବାର ଗୋଟେ ସୀମା ଥାଏ ।

ବର୍ଷା ॥ ପ୍ଲିଜ୍··· ବର୍ତ୍ତମାନ !

ଜୋସେଫ ॥ ଭଦ୍ରଲୋକଙ୍କ ସାଙ୍ଗରେ ଆସିଲ ବୋଧହୁଏ !

ବର୍ଷା ॥ ହଁ, ନାଚ କ୍ଲାସ ପରେ ପ୍ରେମଦତ୍ତ ମତେ ତାଙ୍କ କାର୍‌ରେ ଛାଡ଼ିବା ପାଇଁ ଆସିଥିଲେ ।

ଜୋସେଫ ॥ ଏ ନୂଆ ଗାଳିବ' ବଦ୍ୟାଟା କେବେଠୁ ଶିଖିଲଣି ?

ବର୍ଷା ॥ କହିବାକୁ ଭୁଲି ଯାଇଥିଲି ।

ଜୋସେଫ ॥ ଏମିତି ଆଉ କେବେ କୋଉ କଥା ଯେମିତି ଭୁଲି ନଯାଅ !

ବର୍ଷା ॥ ଜୋସେଫ, ଟିକିଏ ମୋ'କଥା ଶୁଣ ।

ଜୋସେଫ ॥ ଚାଲ ଘର ଭିତରକୁ ଚାଲ ।

ବର୍ଷା ॥ ପ୍ରେମଦତ୍ତ, ଟିକିଏ ବସ, ମୁଁ ଗୋଟାଏ ମିନଟ୍‌ରେ ଆସୁଛି ।

ପ୍ରେମଦତ୍ତ ॥ (ଅସହିଷ୍ଣୁ ଭାବେ) ତମର ମନେ ରଖିବା ଉଚିତ, ମୁଁ ତୁମର ଅତିଥି ।

ବର୍ଷା ।। ଚେଞ୍ଜ ବ ସିଲି !

ପ୍ରେମଦତ୍ତ ।। ଅଚ୍ଛା !!

ସମ୍ବତ୍ ।। (ପ୍ରବେଶ କରି) କ୍ଷମା କରିବେ ନମ୍ବର ଟୁ ! ମୁଁ ନମସ୍କାରଟା ଭୁଲି ଯାଇଥିଲି ।

ପ୍ରେମଦତ୍ତ ।। ଓ ! ନେଭର୍ ମାଇଣ୍ଡ୍ ।

ସମ୍ବତ୍ ।। ସେମିତି ଚଳିବନି । ଏ ଘରର ସମସ୍ତ ଅତିଥିଙ୍କୁ ସତ୍କାର କରିବା ଦାୟିତ୍ୱ ମୋର ।

ପ୍ରେମଦତ୍ତ ।। ଅତିଥି ସତ୍କାରକ ସମ୍ବତ୍ ?

ସମ୍ବତ୍ ।। ତା'ଛଡ଼ା ବଡ ମାନଙ୍କୁ ନମସ୍କାର କରାଯାଏ ।

ପ୍ରେମଦତ୍ତ ।। ତମେ ବମ୍ବେ ଯାଉଚ ?

ସମ୍ବତ ।। (ଖୁସି ହୋଇ) ତମେ କେମିତି ଜାଣିଲ ?

ପ୍ରେମଦତ୍ତ ।। ବର୍ଷା କହୁଥିଲା, କେବେ ଯାଉଛ ?

ସମ୍ବତ୍ ।। କହି ହେଉନି; କାରଣ ଏ ପର୍ଯ୍ୟନ୍ତ ଟଙ୍କା ଯୋଗାଡ ହୋଇ ପାରିନି ।

ପ୍ରେମଦତ୍ତ ।। ଟଙ୍କା ପାଇଁ କୌଣସି କାମ ଅଟକି ପାରେନା । କେତେ ଟଙ୍କା ଦରକାର ?

ସମ୍ବତ୍ ।। ହଜାରେ । କାରଣ ସାଙ୍ଗରେ ମୋର ଜଣେ ବନ୍ଧୁ ବି ଅଛନ୍ତି ।

ପ୍ରେମଦତ୍ତ ।। ତମେ ଆକ୍ଟିଂ ଜାଣ ?

ସମ୍ବତ୍ ।। ୟେସ୍ । (ଉତ୍ସାହିତ ହୋଇ)

ପ୍ରେମଦତ୍ତ ।। ଫ୍ଲରସ୍ କରିବ ବୋଲି ଆଶା ?

ସମ୍ବତ୍ ।। ହଁ, ନଷ୍ଟସ୍ତ କରିବ ମାଷ୍ଟର, କଲେଜରେ ଡ୍ରାମା କରି କରି ମୁଁ ଗୁରି ବର୍ଷ ହେଲା ବି. ଏ: ଫେଲ ହେଉଚି ମାଷ୍ଟର । ଏ ଘରେ ଯେତେ ମେଡ଼ାଲ ଦେଖିବ ସେଥିରୁ ଅଧେ ମୋର ।

ପ୍ରେମଦତ୍ତ ।। ଆଉ ଅଧେ ?

ସଂବତ୍ ।। ବର୍ଷାର···

।। ଛଅଟି ।।

ପ୍ରେମଦତ୍ତ ॥ ନାଚ ପାଇଁ ?

ସଂବ୍ରତ୍ ॥ ଓଡ଼ିଶୀ ନାଚ, ଆମ ପରିବାର ଭିତରେ ଆମେ ପ୍ରଥମ ବୁଇଜଣ ଖ୍ୟାତନାମା କଳାକାର ।

ପ୍ରେମଦତ୍ତ ॥ କଳା ପାଇଁ ତମେ ପ୍ରାଣ ଉତ୍ସର୍ଗ କର !

ସଂବ୍ରତ୍ ॥ ତମେ ମତେ ସାହାଯ୍ୟ କରିବ ?

ପ୍ରେମଦତ୍ତ ॥ ଗୋଟାଏ ସର୍ତ୍ତରେ, ଯଦି ତମେ ମତେ ସାହାଯ୍ୟ କର ।

ସଂବ୍ରତ୍ ॥ କୁହ, ପ୍ରସ୍ତୁତ ।

ପ୍ରେମଦତ୍ତ ॥ ବେଶ୍, ସେ ଟୋକାଟା କିଏ ?

ସଂବ୍ରତ୍ ॥ କୋଉ ଟୋକାଟା ?

ପ୍ରେମଦତ୍ତ ॥ ଅଧଘଣ୍ଟାଏ ହେଲା ଯିଏ ବର୍ଷା ପାଇଁ ଅପେକ୍ଷା କରିଥିଲା ।

ସଂବ୍ରତ୍ ॥ ସେ ଦାଢ଼ିବାଲା ?

ପ୍ରେମଦତ୍ତ ॥ ଛେଳି ଦାଢ଼ି, ଯିଏ ଗୋଟିଏ ଛେଳୀ ।

ସଂବ୍ରତ୍ ॥ ହଉ ତମ କଥା ରହିଲା, ମନେକର ଯିଏ ଗୋଟେ ଛେଳୀ ।

ପ୍ରେମଦତ୍ତ ॥ ତା' ମାଂସ ମୁଁ ଖାଇଯିବି ।

ସଂବ୍ରତ୍ ॥ ତମେ କଣ ଜଙ୍ଗଲୀ ?

ପ୍ରେମଦତ୍ତ ॥ ଏଇ ଛେଳୀ ମାନଙ୍କ ପାଇଁ ଜଙ୍ଗଲୀ ହେଇପାରେ ।

ସଂବ୍ରତ୍ ॥ ସ୍ୟା'– ହୁଃ'··· — କରିବ ?

ପ୍ରେମଦତ୍ତ ॥ ଗୃହେ କୋଇ ମୁଝେ ଜଙ୍ଗଲୀ କହେ ।

ସଂବ୍ରତ୍ ॥ କହନେ ଦୋ' ଜୋ କହତା ରହେ
ହମ୍ ପ୍ୟାରକେ ତୋଫାନୋଁ ମେ ଘିରେ ହୈ ।

ପ୍ରେମଦତ୍ତ ॥ ତମେ ସେ ଟୋକାଟାର ଆଡ୍ରେସ ଦିଅ ।

ସଂବ୍ରତ୍ ॥ କମିଶନ ମିଳିବ ? ତମେ ଯାହା କରୁଚ କର । ମୋର ବମ୍ବେ ଯିବା ଉଚିତ, ଏବଂ ଯିବି ।

ପ୍ରେମଦତ୍ତ ॥ ଯେତେ ଟଙ୍କା ଲୋଡ଼ିବ ଦିଆଯିବ ।

ସଂବ୍ରତ୍ ॥ ସେ ଡ଼େପୁଟି ସେକ୍ରେଟାରୀ ଜାକୋବ୍ ମହାପାତ୍ର ପୁଅ ।

॥ ସନ୍ଧ୍ୟାରାଣି ॥

ପ୍ରେମଦତ୍ତ ।। (କେଡ ମଡ଼ ହେଇ) ଦୂଧ୍ ପୀନେଓ୍ୱାଲ୍ ବଚ୍ଚା !!

ସବ୍ବତ୍ ।। ହାଃ…ହାଃ…ହାଃ… (ପାଟି କରି) ହେ ନମ୍ବର ଓ୍ୱାନ୍, ତମକୁ କ'ଣ କହୁଛନ୍ତି !

ପ୍ରେମଦତ୍ତ ।। ତାକୁ ଠିକଣା ସମୟରେ ଜବାବ ଦିଆଯିବ ।

ସବ୍ବତ୍ ।। ଦିଆଯାଉ, (ଟିକିଏ ପରେ) ଆଚ୍ଛା ନମ୍ବର ଟୁ' !

ପ୍ରେମଦତ୍ତ ।। କ'ଣ… ?

ସବ୍ବତ୍ ।। ତମେ କଂଟ୍ରାକ୍ଟରି କରୁଛ ପରା ?

ପ୍ରେମଦତ୍ତ ।। ହଁ ।

ସବ୍ବତ୍ ।। ତମର ବହୁତ ଟଙ୍କା ଥିବ, ନାହିଁ ?

ପ୍ରେମଦତ୍ତ ।। ବହୁତ ଟଙ୍କା ଅଛି ।

ସବ୍ବତ୍ ।। ବଡ଼ ଘରଟେ ଥିବ ?

ପ୍ରେମଦତ୍ତ ।। ଅନେକ ବଡ଼ ଘର ଅଛି ।

ସବ୍ବତ୍ ।। ନିଜର ? ନା ଏମିତି ସରକାରୀ ଘର ?

ପ୍ରେମଦତ୍ତ ।। ନିଜର ।

ସବ୍ବତ୍ ।। କୋଉ ନମ୍ବରରେ ?

ପ୍ରେମଦତ୍ତ ।। ଶହୀଦ ନଗର ।

ସବ୍ବତ୍ ।। ଫ୍ଲାଟ୍ ?

ପ୍ରେମଦତ୍ତ ।। ହଁ ।

ସଂବତ୍ ।। ଫ୍ଲାଟ୍ ସାମନାରେ ପୋର୍ଟିକୋ ?

ପ୍ରେମଦତ୍ତ ।। ହଁ, ଅଛି ।

ସଂବତ୍ ।। ଆଉ ଗୋଟାଏ ଗ୍ୟାରେଜ୍ ?

ପ୍ରେମଦତ୍ତ ।। ହଁ ଗ୍ୟାରେଜ୍ ଭିତରେ ଗାଡ଼ି… ।

ସଂବତ୍ ।। ଚକୋଲେଟ୍ ରଙ୍ଗ ?

ପ୍ରେମଦତ୍ତ ।। ଫ୍ଲାଟ ସାମନାରେ ଲ'ନ ?

ସଂବତ୍ ।। ଗୋଟେ ଆଲ୍‌ସେସିଆନ୍ ଡଗ୍ ?

ପ୍ରେମଦତ୍ତ ॥ ଗେଟ୍ ସାମନାରେ "ବ ଓ୍ୱେର୍ ଅଫ୍ ଡଗ୍" ନୋଟିସ୍ ବୋର୍ଡ

ସଂବିତ୍ ॥ ଓ୍ୱାଣ୍ଡରଫୁଲ୍ ! ବମ୍ବେ ପ୍ୟାଟାର୍ଣ୍ଣ ?

ପ୍ରେମଦତ୍ତ ॥ ୧୯୬୦ ମଡେଲ୍ ।

ସଂବିତ୍ ॥ ତମେ ଶୀଘ୍ର ବର୍ଷାକୁ ବାହା ହେଇ ପଡ଼ୁନ ?

ପ୍ରେମଦତ୍ତ ॥ ବର୍ଷା ଗୋଟେ ଭଲ ବୋହୂ ହେଇ ପାରିବ ?

ସଂବିତ୍ ॥ ଫିଲ୍ମୀ ବୋହୂ ହେବ ।

ପ୍ରେମଦତ୍ତ ॥ ଅଃଇଃ ଏ, ଏହ୍ଃ ମାନଙ୍କର ଯେମିତି ବୋହୂ ଅଛି, ସେମିତି ?

ସଂବିତ୍ ॥ ତମର ଯେମିତି ଗୋଟେ ମ୍ୟାଡାମ୍ ଦରକାର ନା କ'ଣ ? ଆମ ବର୍ଷା ଠିକ୍ ସେମିତି ବୋହୂଟେ ହେଇ ପାରିବ ।

ପ୍ରେମଦତ୍ତ ॥ ମୋର ସେମିତି··· ଠିକ୍ ସେମିତି ଟିଏ ଦରକାର ଥିଲା । ଏବେ ଟଙ୍କା ଥାଇ ବି' ମତେ ସେମିତି ମନଲାଖି ଟିଏ ମିଳି ନ ଥିଲା । (କଣ୍ଠରେ ଆର୍ଦ୍ରତା) ।

ସଂବିତ୍ ॥ ବାହା ହେବା ପାଇଁ କେହି ରାଜି ହଉ ନ ଥିବେ ।

ପ୍ରେମଦତ୍ତ ॥ ଏଁ !! ତମେ କେମିତି ଜାଣିଲ ? (ହତାଶ ହେଲେ)

ସଂବିତ୍ ॥ ତମେ ଟିକିଏ କଳା ଓ ମୋଟା ।

ପ୍ରେମଦତ୍ତ ॥ ନାଁ ତ, ମୁଁ ଶ୍ୟାମଳ ଆଉ ବଡ଼ିଟା ମୋର ନର୍ମାଲ୍ !

ସଂବିତ୍ ॥ ହେଃ··· ହେଃ··· ହେଃ··· ତମ ପେଟ ବାହାର ପଡ଼ୁଛି !

ପ୍ରେମଦତ୍ତ ॥ ତା' ମାନେ ମୁଁ ମୋଟା ? (ହତାଶ)

ସଂବିତ୍ ॥ ନିଶ୍ଚୟ ତମର ବୟସ ବି' ବେଶୀ ହେଲାଣି—

ପ୍ରେମଦତ୍ତ ॥ ଏଁ !! କେତେ ହେବ ? (ହତାଶ ହୋଇ)

ସଂବିତ୍ ॥ ପାଖାପାଖି ଚାଳିଶ୍ ।

ପ୍ରେମଦତ୍ତ ॥ ଏଁ !! (ପ୍ରାୟ ଭାଙ୍ଗି ପଡ଼ିବା ଉପରେ)

ସଂବିତ୍ ॥ ସେଇଥି ପାଇଁ କୋଉ ଝିଅ ରାଜି ହଉ ନାହାନ୍ତି, ହୁଟସି· ହୁଟେଇନ୍ ପେୟାର୍ ଠିକ୍ ହଉନ ।

ପ୍ରେମଦତ୍ତ ॥ ବର୍ଷାକୁ ରାଜି କରେଇ ଦେବ ?

॥ ଅଟେକ୍ଲଗି ॥

ସଂବିତ୍ ।। ବମ୍ବେ ଟିକେଟଟା ଦବ ?

ପ୍ରେମଦତ୍ତ ।। ଆହୁରି ଅନେକ ଟଙ୍କା ଦେବି, ମତେ ସାହାଯ୍ୟ କର, ବର୍ଷା ବିନା ମୁଁ ବଞ୍ଚି ପାରିବିନି ।
(ସ୍ୱଗତୋକ୍ତି) ନର୍ଜନତା, କ୍ଳାନ୍ତି···ଟଙ୍କା···ସଫୋକେଶନ !
ମୁଁ କ୍ ଣ୍ଟବିଛି···
ନର୍ଜନତା : ସମୁଦ୍ରର ବୈଶାଖୀ ବାଲିରେ
ସ୍ୱପ୍ନ ଭଳି ଜହ୍ନ ଆସେ
ଓ ମୁଁ କେନେଡ଼ି ଗୀତ ଗାଏ
ଟୀକା ପଳି ଗୋବିନ୍ଦଚନ୍ଦ୍ରଙ୍କ
ସ୍ୱର୍ଣ୍ଣମୃଗ ମିଳୁନାହିଁ ।
ମତେ ଦିଅ ସମସ୍ତର ମୃତ ସଞ୍ଜୀବନୀ ।

ସଂବିତ୍ ।। ଓ ।ଣ୍ଡରଫୁଲ୍ ଆକ୍‌ଟିଂ କରୁଥିଲ, ତମେ ବି ବମ୍ବେ ଆସ । ତୁମର ଡ଼ାଇଲଗ୍ ଡ଼େଲିଭରି ସୁନ୍ଦର ।

ପ୍ରେମଦତ୍ତ ।। ତମେ ମତେ ତ୍ରାଣ କରିବନି ସଂବିତ୍ । ମୁଁ ପାଟେଵୋରିକ ଜୀବନଟେ ଭୁଲିଛି । ମୋର କେହି ନାହାନ୍ତି, ବାପା, ମା, ଭଉଣୀ, ଭାଇ··· କିଏ ଜାଣେନା ।

ସଂବିତ୍ ।। ଦଶହରା, ମହାଳୟା, ରଥଯାତ୍ରା, ବୁଡ଼, ଦୀପାବଳୀ କିଛି ଜାଣିନା ?

ପ୍ରେମଦତ୍ତ ।। କିଛି ଜାଣିନି ।

ସଂବିତ୍ ।। ପିଲାବେଳେ ଦଶହରା ଛୁଟିରେ ଆମେ ଗାଁକୁ ଯାଉ । ଗିଲିଦାଣ୍ଡି ଖେଳୁ । କୁକୁରମାନେ ରାସ୍ତାରେ ଛନ୍ଦାଛନ୍ଦି ହୋଇ ଖେଳୁଥିଲାବେଳେ ତାଙ୍କ ଉପରକୁ ଟେକା ଫୋପାଡୁ··· ଚଢ଼େଇମାନଙ୍କୁ ପଥର ମାରି ଗୋଡ଼ାଉ···ପ୍ରଜାପତି ଧରୁ ଆଉ ପଥରର ଦେବତା ଗଢ଼ି ତା'ରି ଆଗରେ ସେମାନଙ୍କୁ ବଳି ଦେଉ··· । ତମେ ସବୁ ଏସବୁ କେବେ କରିନ ?

ପ୍ରେମଦତ୍ତ ।। ପିଲାଦିନେ ମୁଁ ଗୋଟାଏ ହୋଷ୍ଟେଲରେ ବାସନ ମାଜୁଥିଲି । ରାତିରେ ସେ ହୋଷ୍ଟେଲ ମାଲିକ ମତେ ଭଲ ଭଲ ମିଠେଇ ଖାଇବାକୁ ଦେଉଥିଲା, ଆଉ ଗେଲ କରୁଥିଲା ।

ସଂବତ୍ ॥ ପିଠା, କାକରା, ଚିତଉ, ରସପୁଳୀ ?

ପ୍ରେମଦତ୍ତ ॥ ସେ ଗୁଡ଼ା ତ ଘରେ ମିଳେ ବୋଲି ଶୁଣିଛୁ । ମତେ କିନ୍ତୁ କେତେ ଦିନ ପରେ ମାଲିକର ବ୍ୟବହାର ଆଉ ଭଲ ଲାଗିଲାନି । ତା'ପରେ ମୁଁ ଗଲି କଲିକତା··· ଆମ ଗାଁ ର କୁଲି ସର୍ଦ୍ଦାର ଗୋବିନ୍ଦ ଦଳେଇ ସାଙ୍ଗରେ··· ରେସ୍‌କୋର୍ସରେ ଟଙ୍କା···ଜୁଆ ସ୍ମୋଗ୍ଲିଂ ଅଡ୍ଡାରେ ମୋର ଜୀବନ···ସ୍ମଗଲିଂ··· ଟଙ୍କା··· ମଦ··· ବେଶ୍ୟା । କିନ୍ତୁ ମୋର ନଜର ବିଜିନେସ୍ ବଢ଼ିଲା । ଟଙ୍କା··· କୋଟି କୋଟି । ସେଇ ପୁରୁଣା ହୋଟେଲକୁ ଯାଇ ମୁଁ ଏଣିକି ମଦ ପିଇଲି ଆଉ ଟଙ୍କା ଫୋପାଡ଼ିଲି ମାଲିକ ଉପରକୁ । କିନ୍ତୁ··· କିନ୍ତୁ ମତେ କେହି ପରିବାରଟେ ଦେଇ ପାରିଲେନି ।

ସଂବତ୍ ॥ ମୁଁ ତୁମକୁ ଦେବି ।

ପ୍ରେମଦତ୍ତ ॥ ଜୋସେଫ ତାକୁ ଛଡ଼େଇ ନେବନି ତ ?

ସଂବତ୍ ॥ ମୁଁ ତୁମକୁ ସାହାଯ୍ୟ କରିବି ନମ୍ବର ଟୁ !

ପ୍ରେମଦତ୍ତ ॥ ପ୍ଲିଜ୍ ! ତମକୁ ମୁଁ ବମ୍ବେ ପଠେଇ ଦେବି ।

[ ଭିତରୁ ଆସିଛି ଜୋସେଫ ]

ଆଜ୍ଞା, ଟିକିଏ ଶୁଣିବେ···

ଜୋସେଫ ॥ ମତେ ଡାକଲେ ?

ସଂବତ୍ ॥ ଜଷ୍ଟ୍··· ଗୋଟାଏ ମିନିଟ୍‌ରେ ମୁଁ ଆସୁଛି ।
( ଯାଇଛି ଭିତରକୁ )

ପ୍ରେମଦତ୍ତ ॥ ( ସଂବତ୍‌କୁ ) ସଂବତ୍ !

ସଂବତ୍ ॥ (ଭିତରୁ) ଆସୁଛି !

ଜୋସେଫ ॥ ଅଜ୍ଞା ମତେ ଡ଼ାକଲେ ?

ପ୍ରେମଦତ୍ତ ॥ ହଁ ।

ଜୋସେଫ ॥ କାହିଁକି ?

ପ୍ରେମଦତ୍ତ ॥ ଆପଣଙ୍କୁ ଗୋଟାଏ କଥା କହିବାର ଥିଲା ।

॥ ଏକଚାଳିଶି ॥

ଜୋସେଫ ।। କୁହନ୍ତୁ !

ପ୍ରେମଦତ୍ତ ।। ଆପଣ ଦାଢି ରଖିଛନ୍ତି କାହିଁକି ?

ଜୋସେଫ ।। ଖୁସିରେ ।

ପ୍ରେମଦତ୍ତ ।। ଏଇଟା ଗୋଟାଏ ଖୁସି ?

ଜୋସେଫ ।। ମୋ' ମତରେ ।

ପ୍ରେମଦତ୍ତ ।। ଆପଣଙ୍କୁ ମତ ବଦଳେଇବାକୁ ପଡ଼ିବ ।

ଜୋସେଫ ।। ଆପଣ କ'ଣ କହିବାକୁ ଚାହୁଁଛନ୍ତି ?

ପ୍ରେମଦତ୍ତ ।। ଆପଣ ଏ ଦାଢି କାଟନ୍ତୁ ।

ଜୋସେଫ ।। ସେଇଟା ମୋ' ଇଚ୍ଛା ।

ପ୍ରେମଦତ୍ତ ।। ଆପଣଙ୍କୁ ଏ ଦାଢି କାଟିବାକୁ ପଡ଼ିବ ।

ଜୋସେଫ ।। କ'ଣ ବାଧ କରୁଛନ୍ତି ?

ପ୍ରେମଦତ୍ତ ।। ଆଦେଶ ଦେଉଛି ।

ଜୋସେଫ ।। ମୁଁ ଆପଣଙ୍କର ପୁଅ ନୁହେଁ କି ଭୃତ୍ୟ ନୁହେଁ ।

ପ୍ରେମଦତ୍ତ ।। କିନ୍ତୁ ଦାଢି କାଟିବାକୁ ପଡ଼ିବ ।

ଜୋସେଫ ।। ସେଇଟା ମୋର ଇଚ୍ଛା !

ପ୍ରେମଦତ୍ତ ।। ଦାଢି ରଖିବା ଏକ ସାମାଜିକ ଅପରାଧ ।

ଜୋସେଫ ।। ହ୍ୱାଟ୍ ନନ୍‌ସେନସ୍ !

ପ୍ରେମଦତ୍ତ ।। କ୍ୱାଇଟ୍ ସେନ୍‌ସ୍ ।

ଜୋସେଫ ।। ଆପଣ ଭଦ୍ରତାର ସୀମା ଲଂଘନ କରୁଛନ୍ତି ।

ପ୍ରେମଦତ୍ତ ।। ଦାଢି ରଖିବା ଏକ ସାମାଜିକ ବିକୃତ ।

ଜୋସେଫ ।। ଦାଢି ଗଛ ମୁଁ ଲଗେଇନି ଗାଲରେ !

ପ୍ରେମଦତ୍ତ ।। ସେ ବୁଦାକୁ କାଟିବା ମାନବିକ କର୍ତ୍ତବ୍ୟ ।

ଜୋସେଫ ।। ମତେ ମୋର କର୍ତ୍ତବ୍ୟ ବେଶ୍ ଜଣା ।

ପ୍ରେମଦତ୍ତ ।। ସେଇଟା କିନ୍ତୁ ମାନବିକ କର୍ତ୍ତବ୍ୟ ଏବଂ ଧର୍ମ ମଣିଷ ନୁହେଁ ।

ଜୋସେଫ ।। ଆଉ ଧର୍ମ ?

ପ୍ରେମଦତ୍ତ ॥ ତମେ ଗୋଟାଏ ଚେଲୀ, ବ୍ରଷ୍ଟ୍ !

ଜୋସେଫ ॥ ଆଉ ତମେ ?

ପ୍ରେମଦତ୍ତ ॥ ଦାଢି ରଖି ତମେ ଆମ ସୋସାଇଟିର ଝିଅମାନଙ୍କ ଚରିତ୍ର ଖରାପ କରୁଚ ।

ଜୋସେଫ ॥ ଆପଣ ପାଗଳ ।

ପ୍ରେମଦତ୍ତ ॥ ତୋର ଦାଢି ଉପୁଡେଇ ଦେବା ।

ଜୋସେଫ ॥ ଆଇ ଓ୍ୱିଲ୍ କଲ୍ ୟୁ !

ପ୍ରେମଦତ୍ତ ॥ ଦାଢି ରଖି ତୁ ବର୍ଷାକୁ ଛଡେଇ ନେଇଯିବୁ ? ଆଇ ଓ୍ୱିଲ୍...

[ ସେ ଜୋସେଫଙ୍କୁ ପିଟିବାକୁ ପାଇଁ ଆଗେଇ ଆସୁଥିଲେ, ଏତିକବେଳେ ଫବତ୍ ଆସିଛୁ ]

ଫବତ୍ ॥ ସ୍ଟପ୍... ସ୍ଟପ୍... ନାଇସ ଡୁଏଲ୍ । ତମେ ଦହେଁ ମୋ ସାଙ୍ଗରେ ବମ୍ବେ ଚାଲ ।

ଜୋସେଫ ॥ ଅଲ୍ ରାଇଟ୍ ! ଆଇ ଓ୍ୱିଲ୍ ସି' ୟୁ !

[ ଜୋସେଫ ଚାଗି ଚାଲି ଯାଇଛୁ । ଏପଟୁ ଆସିଛୁ ବର୍ଷା ]

ବର୍ଷା ॥ କ'ଣ ହେଲା ପ୍ରେମଦତ୍ତ ?  ଏମିତ ପାଟି କରୁଥିଲ କାହିଁକ ? ଜୋସେଫ କୁଆଡ଼େ ଗଲେ ଫବତ୍ ଭାଇ ?

ଫବତ୍ ॥ ଏ ଦୁଇଜଣ ଫାଇଟିଂ କରୁଥିଲେ ।

ପ୍ରେମଦତ୍ତ ॥ (ଭୀଷଣ କ୍ଲାନ୍ତ ହୋଇ) ଆଇ ଆମ୍ ସରି ।

ବର୍ଷା ॥ କ'ଣ ହେଇଚ ପ୍ରେମଦତ୍ତ ?

ପ୍ରେମଦତ୍ତ ॥ ହଠାତ୍ ମୁଁ ଚାଗି ଯାଇଥିଲି ସେ ଛୋକାଟା ଉପରେ ।

ବର୍ଷା ॥ କିନ୍ତୁ କାହିଁକ ?

ପ୍ରେମଦତ୍ତ ॥ ହେଇପାରେ— ଈର୍ଷା ।

ବର୍ଷା ॥ କାନ୍ତୁ... ତମେ ଜୋସେଫଙ୍କୁ ଈର୍ଷା କଲ କାହିଁକ ?

॥ ଡେସ୍ପାଲିଗି ॥

ପ୍ରେମଦତ୍ତ ।। ପ୍ରେମଦତ୍ତ କିଛି ସମୟ ପାଇଁ ପୂ ରୁଷ ହେବାକୁ ଚାହିଁଥିଲା ।

ବର୍ଷା ।। କିନ୍ତୁ ମୁଁ ବୁଝି ପାରୁନି... ତମେ ତାଙ୍କ ଉପରେ ଏମିତି ରାଗିବା କ'ଣ ଦରକାର ଥିଲା ?

ପ୍ରେମଦତ୍ତ ।। ଓଃ ! ଡୋଣ୍ଟ୍ ଡ଼ିସ୍ଟର୍ବ ମି, ୟୁ ସିଲ୍ଲି ମେଡ୍ ଗାର୍ଲ୍ !

ବର୍ଷା ।। (କାନ୍ଦ କାନ୍ଦ ହୋଇ) ତମର କ'ଣ ହେଲା ପ୍ରେମଦତ୍ତ ? ତମେ ହଠାତ୍ ଏମିତି ପଶୁଭଳି ଦିଶୁଛ କାହିଁକି ?

ପ୍ରେମଦତ୍ତ ।। (ଚିତ୍କାର କରି) ତମେ ବୁଝି ପାରିବ ନାହିଁ ସେ ଅନ୍ତର୍ଦାହ... ତମେ ନାରୀ ନୁହ... ଆଇ ମିନ୍... ତମେ ଗୋଟେ ଶିଶୁ ! ତମ ପାଇଁ ଜୀବନଟା କୁତୁକୁତୁ ହୋଇପାରେ,... କିନ୍ତୁ ମୁଁ... ମୁଁ...

ବର୍ଷା ।। ପ୍ଲିଜ୍ ! ତମେ ଶାନ୍ତ ହୁଅ ଡ଼ାର୍ଲିଂ ।

ସବତ୍ ।। ତମେ ଶାନ୍ତ ହୁଅ ମାଷ୍ଟର !

ବର୍ଷା ।। କଫୁଲ୍ ଣଫୁଲ୍ ହେଫୁଲ୍ ଇଫୁଲ୍ ଛଫୁଲ୍ ?

ସବତ୍ ।। ସେଫୁଲ୍ ତଫୁଲ୍ ତେଫୁଲ୍ ଭଫୁଲ୍ ଲଫୁଲ୍ ପାଫୁଲ୍ ଉଫୁଲ୍ ଛିଫୁଲ୍ ନ୍ତିଫୁଲ୍ ।

ବର୍ଷା ।। କିଫୁଲ୍ ଏଫୁଲ୍ ?

ସବତ୍ ।। ପ୍ରେଫୁଲ୍ ମଫୁଲ୍ ଦଫୁଲ୍ ତ୍ତଫୁଲ୍ ।

ବର୍ଷା ।। ସଫୁଲ୍ ତେଫୁଲ୍ ?

ସବତ୍ ।। ରୁଫୁଲ୍ ଡାଫୁଲ୍ କ୍ସଫୁଲ୍ ବାଫୁଲ୍ ହାଫୁଲ୍ ହେଫୁଲ୍ ଇଫୁଲ୍ ଯାଫୁଲ୍ !

ପ୍ରେମଦତ୍ତ ।। ହାଃ... ହାଃ... ହାଃ... ହାଃ...

ସବତ୍ ।। ତାଫୁଲ୍ ଙ୍କଫୁଲ୍ ରଫୁଲ୍ ବଫୁଲ୍ ହୁଫୁଲ୍ ତଫୁଲ୍ ଟଫୁଲ୍ ଙ୍କାଫୁଲ୍ ଅଫୁଲ୍ ଛିଫୁଲ୍ ।

ପ୍ରେମଦତ୍ତ ।। ପିଲମାନେ ଏମିତି ଠାଠରେ କଥାବାର୍ତ୍ତା ହୁଅନ୍ତି ।

ବର୍ଷା ।। (ହସି ହସି) କିଛି ବୁଝି ପାରୁନା ତମେ ?

ପ୍ରେମଦତ୍ତ ।। ବନ୍ଧୁ ବିସର୍ଗ ମଧ୍ୟ । ଆଚ୍ଛା, ଠିକ୍ ଅଛୁ, ମୁଁ ଆଜ୍ଞା ଆସୁଛି ତା'ହେଲେ ।

ବର୍ଷା ।। କାଲି ଆସିବ ?

ପ୍ରେମଦତ୍ତ ।। କାଲି ନାଚ କ୍ଲାସରେ···

ବର୍ଷା ।। ଗୁଡ୍ ନାଇଟ୍ !

ପ୍ରେମଦତ୍ତ ।। ଗୁଡ୍ ନାଇଟ୍ !

[ ଯାଇଛି । ସଂବିତ୍ ଓ ବର୍ଷା ସାମନାସାମନି ଠିଆ ହୋଇଛନ୍ତି ]

ସଂବିତ୍ ।। କ'ଣ କରିବା ?

ବର୍ଷା ।। ତାସ୍ ଖେଳିବା ?

ସଂବିତ୍ ।। ନା ।

ବର୍ଷା ।। ଆଉ କ'ଣ କରିବା ?

ସଂବିତ୍ ।। ପଢିବା ।

ବର୍ଷା ।। କେତେଟା ବାଜିଲାଣି ?

ସଂବିତ୍ ।। ଆଠଟା ବାଜିବ ।

ବର୍ଷା ।। (ବାହାରକୁ ଚାହିଁ) ଭାଇ ଆସିଲେଣି ।

ସଂବିତ୍ ।। ଭାଇ ? ବହି ଖଣ୍ଡେ ବାହାର କର । ପଢିବା ଆରମ୍ଭ କରିଦେବା ।

[ ବହି ଖୋଜୁ ଖୋଜୁ ସଂତାପର ପ୍ରବେଶ । ରୁକ୍ଷ ଦେଖା ଯାଉଛି ]

ବର୍ଷା ।। ଭାଇ, ଡିକ୍‌ସନାରୀଟା କୋଉଠି ରଖି ଦେଲ ଯେ ?

ସଂତାପ ।। ସେଇଠି ସେଲ୍‌ଫ ଉପରେ ଥିବ । (ଅନ୍ୟମନସ୍କ ଭାବେ) ଭାଉଜ ଫେରିଲେଣି ?

ବର୍ଷା ।। ଡାକି ଦେବି ?

ସଂତାପ ।। (କ୍ଲାନ୍ତ ହୋଇ ବସିଲେ ସୋଫା ଉପରେ) ହଁ ।

।। ପଞ୍ଚମ ଦୃଶ୍ୟ ।।

[ ବର୍ଷା ଏବଂ ତା'ପଛେ ପଛେ
ସଂବର୍ତ୍ତ ଭିତରକୁ ଯାଇଛନ୍ତି ଏବଂ
ଭିତରୁ ଆସିଛି ସିକତା ]

ସିକତା ।। ଆଜି ଏତେ ଡେରିଏ ?

ସଂତାପ ।। ହୁଁ ।

ସିକତା ।। କ'ଣ ବେଶୀ କାମ ଥିଲା ?

ସଂତାପ ।। ଆଉ କାମ କରିବାକୁ ପଡ଼ିବ ନାହିଁ ।

ସିକତା ।। କ'ଣ ହୋଇଚି ?

ସଂତାପ ।। ସସ୍‌ପେନ୍‌ସନ୍ !

ସିକତା ।। ସଂତାପ !

ସଂତାପ ।। ସବୁ ତମ ଜାକୋବ ମହାପାତ୍ରର କାଣ୍ଡ ।

ସିକତା ।। ବର୍ତ୍ତମାନ ଘର ଚଳିବ କେମିତି ?

ସଂତାପ ।। କେଜାଣି !

ସିକତା ।। ଘର ଖର୍ଚ୍ଚଟା କେତେ ହଉଚି ହିସାବ ରଖିଚ ?

ସଂତାପ ।। ସେଇଟା ତମେ ରଖୁଥିଲ ଅର୍ଦ୍ଧାଙ୍ଗିନୀ ଭାବେ । ଏଣିକି ପୁରାପୁରି ରଖିବ ।

ସିକତା ।। ତମେ··· ମାନେ ମୋ' ପଇସାରେ ତମେ ଖାଇ, ଭଉଣୀ ବାପ ସବୁ ଚଳିବ ?

ସଂତାପ ।। ଆଉ ଉପାୟ ନାହିଁ, ନ ହେଲେ ଅନାହାର ।

ସିକତା ।। ତମେ ସେଇ ସଂତାପ ମହାନ୍ତି ସିଏ ରେଭେନ୍‌ସା କଲେଜର ପ୍ରେସିଡେଣ୍ଟ ଥିଲ !

ସଂତାପ ।। ସିଏ ତ କଲେଜ ଛାଡ଼ିଲା ପରେ ମରି ଯାଇଚି ।

ସିକତା ।। ତମ ଉପରେ ମୋର ବିଶ୍ୱାସ ଥିଲା ସଂତାପ !

ସଂତାପ ।। ଯାହା ଥରେ ହଜିଗଲେ ଆଉ ଖୋଜି ହୁଏନା ।

ସିକତା ।। ମାନେ ?

ସଂତାପ ।। ତମେ ମୋ' ସାଙ୍ଗରେ ବିଶ୍ୱାସଘାତକତା କରିଚ !

ସିକତା ।। ସଂତାପ! ତମେ ଏ କଥା କହ୍ପାରୁଛ ?

ସଂତାପ ।। ବଞ୍ଚିବା ପାଇଁ ମଣିଷକୁ ଏତେ ଜଟିଳ ହେବାକୁ ହୁଏ ବୋଲି ଜାଣି ନ ଥିଲି !

ସିକତା ।। ବର୍ତ୍ତମାନ ଜାଣିଲ ?

ସଂତାପ ।। ଜାଣିଲି, ତମକୁ ବିବାହ କରି ମୁଁ ଭୁଲ କରିଛି, କମ୍ଵା ହେଇ-ପାରେ ମତେ ବିବାହ କରି ତମେ ଭୁଲ କରିଛ !

ସିକତା ।। ତମେ ନିଷ୍ଠୁର । ଯେମିତି ଆଗରୁ ଥିଲ, ଆଜି ବି ସେମିତି ।

ସଂତାପ ।। ତମକୁ ଭଲ ପାଇ ଆଜି ମୋର ଘୃଣା ଯାଇଛି, ଅଥଚ···

ସିକତା ।। ମୋ'ଲାଗି ?

ସଂତାପ ।। ତମେ ଜାକୋବ୍ ମହାପାତ୍ରର ଗ୍ରେଟେରକୁ ସନ୍ଧ୍ୟା ସାତଟା ବେଳେ କାହିଁକି ଯାଇଥିଲ ?

ସିକତା ।। ତମେ ମତେ ଘୃଣା କରିବା ପାଇଁ କାହିଁକି ଅନୁମତି ଦେଲ ?

ସଂତାପ ।। କନ୍ତୁ ବାହା ହେଲା ବେଳକୁ ତମେ ଘୃଣା କରୁଥିଲ !

ସିକତା ।। ବାହା ହେଇ ସାରିଲା ପରେ ମୁଁ ଘରେ ରହି ପାରିଥାନ୍ତି ?· ଓଡ଼ିଆ ଘରର ବୋହୂ ହେଇ··· ଓଢଣା ଦେଇ··· ତମ· ପାଇଁ ଲୁଚି ଓ ମାଛ ତରକାରୀ ରାନ୍ଧି···

ସଂତାପ ।। (ଘୃଣାରେ) ତମେ ? ସିକତା ଦାସ ?

ସିକତା ।। ଇସ୍, ଏତେଶୀଘ୍ର ସିକତା ମହାନ୍ତି ହେବାର ଗୌରବଟା ଛଡ଼େଇ ନେଇଗଲ ତମେ ?

ସଂତାପ ।। ମନୁ ସଂହିତା ଠାରୁ ଆରମ୍ଭ କରି ଓଡ଼ିଆ ଉପନ୍ୟାସ ପର୍ଯ୍ୟନ୍ତ ପଢିଥିଲି, ନାରୀମାନେ ଛଳନା କରନ୍ତି ବୋଲି । ଆଜି ଆଖି ଆଗରେ ଦେଖୁଛି ।

ସିକତା ।। ଆଉ ତମେ ? ପୁରୁଷତ୍ୱର ବିଫଳତାଟାକୁ ଏମିତି ଘୃଣା କରି ଲୁଚେଇ ଦେବ ?

ସଂତାପ ।। ବିବାହ ଖାଲି ସ୍ୱପ୍ନ ଆଉ ଗୌରବ ନୁହେ । ସଂଗ୍ରାମର ଆରମ୍ଭ ।

ସିକତା ।। ମୁଁ ସଂଗ୍ରାମ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲି ।

।। ସତଚୂଲଶି ।।

ସଂତାପ ।। ଖାଲି ପ୍ରତିଶ୍ରୁତି । ତେଣୁ ବିବାହଟାକୁ ଲାଇସେନ୍‌ସ ଭଳି ତମେ ବ୍ୟବହାର କଲ !

ସିକତା ।। ତମେ ମିନ୍ ! ଛି...ଛି... ତମକୁ ଦେଖିଲେ...

ସଂତାପ ।। ଘୃଣା ଆସୁଚି... ? ସେଇଟାକୁ ଏତେଦିନ ଲୁଚେଇ ରଖିବା କ'ଣ ଦରକାର ଥିଲା ?

ସିକତା ।। ସେଇଟା ମୋର ତ୍ୟାଗ ।

ସଂତାପ ।। ତ୍ୟାଗର ସିନା ଗୋଟାଏ ସୀମା ଅଛି ।

ସିକତା ।। କାହିଁକି ? ବାହା ହେଇ ତମେ ମତେ କ'ଣ ଦେଇଚ ?

ସଂତାପ ।। ଗୋଟାଏ ସିନ୍ଦୂର ଦେଇଛି । ସେଇଥି ପାଇଁ ତମେ କୃତଜ୍ଞ ରହିବା ଉଚିତ ଥିଲା ।

ସିକତା ।। ତମକୁ ମୁଁ ପ୍ରତିଦାନରେ ମୋର ସବୁ ଗୋପନୀୟତା ଦେଇଛି !

ସଂତାପ ।। ସେଇଟା ସ୍ୱାଭାବିକ ।

ସିକତା ।। ତମେ ସ୍ୱାର୍ଥପର ।

ସଂତାପ ।। ଆଉ ତମେ ?

ସିକତା ।। ମୁଁ ନାରୀ ହେବା ପାଇଁ ଚାହିଁଛି, ବୋହୂ ନୁହେଁ ।

ସଂତାପ ।। ସନ୍ଧ୍ୟାର ଫିକା ଆଲୁଅରେ ସେଇଥି ପାଇଁ ଜାକୋବ ମହାପାତ୍ରଙ୍କ ପ୍ରାଇଭେଟ୍ ଚାମ୍ବେର୍‌ଟା ତମ ପାଇଁ ବାସର-ଶଯ୍ୟା ମନେ ହେଲା ?

ସିକତା ।। ସଟ୍ ଅପ୍ !

ସଂତାପ ।। ୟୁ ସଟ୍‌ଅପ୍ !

ସିକତା ।। ମୁଁ ବିବାହ ନାମକ ଏକ ପାଶବିକ ଅତ୍ୟାଚାରରେ ବିଶ୍ୱାସ କରେନା—

ସଂତାପ ।। ଗେଟ୍ ଆଉଟ୍ ! ବର୍ତ୍ତମାନ ବାହାରି ଯାଅ ।

ସିକତା ।। ଯିବି, କିନ୍ତୁ ତମର କଥା ଫେରେଇ ନିଅ ପ୍ରଥମେ—

ସଂତାପ ।। କୋଉ କଥା... ?

ସିକତା ।। କେବେ କାହାର ଆଗରେ କହିବ ନାହିଁ; ମୋ'ଲାଗି ତମର ଚାକିରି ଗଲା ।

।। ଅଠଚାଳିଶି ।।

ସନ୍ତାପ ।। ଅଲବତ୍ କହିବ । ଏଇଟା ମୋର ପ୍ରାୟଶ୍ଚିତ୍ତ ।

ସିକତା ।। ତମେ ଜାକୋବ୍ ମହାପାତ୍ରଙ୍କ ଚେମ୍ବର୍‌କୁ ଯାଇ କାହିଁକି ତାଙ୍କୁ ଗୁପ୍ତଭାବେ ମାରିଲ ?

ସନ୍ତାପ ।। ସିଏ ତମ ଉପରେ…ତମକୁ…ତମକୁ ଖରାପ ବ୍ୟବହାର କଲା ବୋଲି !

ସିକତା ।। କ'ଣ ହେଇଗଲା ? ଘୃଣଣା ଜଳେ ଗୋଟେ ଅନ୍ଧ ଘଟଣା ଏମିତି ଘଟେ !

ସନ୍ତାପ ।। ତାମାନେ ଆଗରୁ ଏମିତି ଘଟିଛି ?

ସିକତା ।। ତମେ ପାଠ ପଢୁଥିଲା ବେଳେ କ'ଣ ଜାକୋବ ମହାପାତ୍ର ନଥିଲେ ? ଖାଲି ତମେ ନୁହ ; ସବୁ ପୁରୁଷ ।

ସନ୍ତାପ ।। କିନ୍ତୁ ବର୍ତ୍ତମାନ ତମେ ବିବାହିତା ।

ସିକତା ।। ତମେ ଗୋଟାଏ ଅପଦାର୍ଥ ! ଘରକୁ ଏକା ସାଙ୍ଗରେ ଟଙ୍କା ଆସିଯିବ—ଆଦର୍ଶ ବୋହୂଟାଏ ବି ମିଳିଯିବ ତମକୁ ଲୁଚି, ଡାଲମା କରି ଖୁଆଇବା ପାଇଁ—! ଏମିତି ସ୍ୱପ୍ନଟେ ଦେଖିଥିଲ ?

ସନ୍ତାପ ।। ହଁ ସ୍ୱପ୍ନ ଦେଖିଥିଲି… ସେଦିନ ସନ୍ଧ୍ୟାରେ…୧୯୬୪ ର ଏକ ନଭେମ୍ବର ସନ୍ଧ୍ୟାରେ…ମୁଁ ହଙ୍ଗର ଷ୍ଟ୍ରାଇକ୍ କରି କ୍ଲାନ୍ତ ହୋଇ ଶୋଇଥିଲି ସେଇ ଆମ୍ବଗଛ ତଳେ…ମୋ ଚାରିପଟେ କିଛି ସମୟ ପୂର୍ବରୁ ପିଲାଙ୍କର ଭିଡ଼ ଥିଲା…ସନ୍ଧ୍ୟାରେ ମତେ ଏକଲା ଛାଡ଼ିଦେଇ ଚାଲିଗଲେ । ଏବଂ ତମେ ଆସିଥିଲ ।

ସିକତା ।। ମୁଁ ତମ ପାଖକୁ ଯାଇ ନଥିଲି । ମୁଁ ଯାଇଥିଲି ମୋର କଳ୍ପନାର ହିରୋ ପାଖକୁ ।

ସନ୍ତାପ ।। ଦୁଇଦିନ ଷ୍ଟ୍ରାଇକ୍ ପରେ ମୁଁ ଚିତ୍ ହୋଇ ଆସନ୍ନ ଶୀତର ଚନ୍ଦ୍ରଟାକୁ ଦେଖୁଥିଲି । ତମେ ମୋ ପାଖରେ ବସିଲ । ମୋ' ମୁଣ୍ଡରେ ହାତ ବୁଲାଇ ଆଣିଥିଲ । ତାପରେ…

ସିକତା ।। ସେତିକି ବେଳେ ତମ ପାଖରେ ଶକ୍ତି ଥିଲା ; ନାଆଁ ଥିଲା ।

।। ଅଶେଷ ।।

ସଂତାପ ।। ତମେ ମେଘ ନଅଁରେ ଜଳିବା ପାଇଁ ଭଲ ପାଉଥିଲ । ସେହି ହାତର ସେଇ ସ୍ପର୍ଶ ମୋର ସବୁ କ୍ଲାନ୍ତି ଦୂର କରି ଦେଉଥିଲା । ତମ ହାତରେ ମୁଁ ତୃଷ୍ଣା ଦେଖୁଥିଲି । ସେଇ ଅମୃତଗନ୍ଧ ଫନ୍ଦ ଫାଙ୍କରେ କେବଳ ଗୋଟିଏ ଜହ୍ନ ଛଡା ଆଉ କିଏ ସେଇ ଅନ୍ତରଙ୍ଗ ମୁହୂର୍ତ୍ତର ସାକ୍ଷୀ ହେଉ ନାହାନ୍ତି ।

ସିକତା ।। ରେଭେନ୍ସା କଲେଜର ପ୍ରେସିଡେଂଟ୍ ସଂତାପ ମହାନ୍ତି ।

ସଂତାପ ।। ଏକଦା ଯିଏ ଉଚ୍ଚ ଉଦନ୍ତ ଯୁଗାନ୍ତକାରୀ ଷ୍ଟ୍ରାଇକ୍‌ର ନେତୃତ୍ୱ ନେଇଥିଲା ।

ସିକତା ।। ତମେ କହୁଥିଲ ତାପରେ ଯାଇ ଦିଲ୍ଲୀରେ ପଢ଼ିବ ବୋଲି । ଆଇ ଏ ଏସ୍ ପାଇଁ ପ୍ରିପେୟାର୍ କରିବ ବୋଲି...

ସଂତାପ ।। ହଠାତ୍ ବାପା ରିଟାୟାର୍ ହେଲେ । ଆର୍ଥିକ ସଂବଳ ନଥିଲା ।

ସିକତା ।। ତମର ମନବଳ ଅଭାବ ।

ସଂତାପ ।। ତମେ ବିବାହ ପରେ ମତେ ସାହାଯ୍ୟ କରିବ...ମୋ' ହାତଧରି ମରୁଭୂମି ଭିତରେ ଆଗେଇନେବ ବୋଲି ମୋର ବିଶ୍ୱାସ ଥିଲା...

ସିକତା ।। ଠିକ୍ ଯେମିତି ମୋର ତମ ଉପରେ ବିଶ୍ୱାସ ଥିଲା !

ସଂତାପ ।। ଆମେ ଗୃହ ଥିଲେ...ଦୁ'ଜଣ ରୋଜଗାର କଲେ ଟଙ୍କା ବଳିବ । ଆମେ ସେଇ ଟଙ୍କାରେ ଇଂଡଷ୍ଟ୍ରି କରିବା...ଫାର୍ମ କରିବା...ଗୁରିଚା ଜର୍ସି ଗାଇ...ରଙ୍ଗେ ବିଦେଶୀ କୁକୁଡ଼ା...

ସିକତା ।। ଦୁଇଟି ସନ୍ତାନ...ସୁଖୀ ପରିବାର ! ( ହସିଲା )

ସଂତାପ ।। ସିକତା !

ସିକତା ।। ତମେ ସାଂଘାତିକ ଭାବେ ବଦଳି ଯାଇଛ ।

ସଂତାପ ।। ଏମିତି ବଦଳିଯାଇ ଆମେ କେତେ ଦିନ ବଞ୍ଚିବା ?

ସିକତା ।। ତମକୁ ନେଇ ମୁଁ ଆଉ ଚଳିପାରିବିନି ।

ସଂତାପ ।। ମୁଁ ତମକୁ ମୁକ୍ତି ଦେବାକୁ ରାଜି ଅଛୁ । ବି-ହାର୍ଯ୍ୟ ! ଯାଅ ।

।। ପର୍ଦ୍ଦା ।।

ସିକତା ।। ଆଉ ଅଟର କୁହ ।

ସଂତାପ ।। ଯାଅ ! ବର୍ତ୍ତମାନ ସ୍ୱପ୍ନ—

ସିକତା ।। ଆଃ !!

ସଂତାପ ।। ଶାଳନ ଶ୍ରେ – ?

ସିକତା ।। ବର୍ତ୍ତମାନ···? ଏଇ ରାତରେ ?

ସଂତାପ ।। ପିବାପାଇଁ ଖାଲି ଗ୍ଲାସଟିଏ ଲୋଡ଼ା । ଏବେ ଆଉ ଯିବି ନାହିଁ ।

ସିକତା ।। ଛ'ବର୍ଷ ତଳର ସଂତାପ ହୋଇଥିଲେ ତମେ ଯାଇ ପାରିଥାନ୍ତ ମତେ ?

ସଂତାପ ।। ଛ'ବର୍ଷ ତଳର ସିକତା ହୋଇଥିଲେ ତମେ ଯାଇ ପାରିଥାନ୍ତ ?

ସିକତା ।। ଛ'ବର୍ଷ ତଳର କଥା ମନେପକାଇ ଆମେ କେତେ ନ ପକାଇ ଆମେ ଚଳିପାରିବାନି ?

ସଂତାପ ।। ସେଇଟା ଆମର ଇତିହାସ ।

ସିକତା ।। ଇତିହାସ ମରି ଗଲାଣି ।

ସଂତାପ ।। ଜରାଜୀର୍ଣ୍ଣ ଅବସ୍ଥାରେ ବଞ୍ଚିଛି ।

ସିକତା ।। ତମ ବାପାଙ୍କ ଭଳି ।

ସଂତାପ ।। (ରାଗିଯାଇ) ସିକତା !

ସିକତା ।। ମୁଁ ତମ ଧମକ ଆଉ ଲାଲ ଆଖିଠାରୁ ଉର୍ଦ୍ଧରେ ଅଛି ।

ସଂତାପ ।। ମୁଁ ଜାକୋବ ମହାପାତ୍ରଙ୍କୁ ଖୁନ୍ କରିବି !

ସିକତା ।। ଗୃହକର୍ତ୍ତା ଯାଇଛି ତାପରେ ଜୀବନ ଯିବ !

ସଂତାପ ।। ତମ ପାଇଁ ସୁଯୋଗ !

ସିକତା ।। ଭୁଲ କରୁଚ । ତମେ ପରା ମତେ ଟୋପାଏ ସିନ୍ଦୁରର ଗୌରବ ଦେଇଚ ? (ହସ)

ସଂତାପ ।। ଓଃ ! ତା' ହେଲେ ମୁଁ କ'ଣ କରିବି ?

॥ ଏକାବନ ॥

[ତା ମୁହଁରେ ବିରକ୍ତି ଓ ଆତ୍ମହତ୍ୟା କରିବା ଭାବ]

ସିକତା ॥ ରୁଟି ଅଉ ଡ଼ାଲମା ତିଆରି କରି ଦେଇଛି । ଖାଇଦେଇ ସୁନାପୁଅ ପରି ଶୋଇବ ଆସ । ( ମୁହଁରେ ହସ । )

ପ୍ରତାପ ॥ ସିକତା !

ସିକତା ॥ ହଁ ଆଜ ଶୀଘ୍ର ଶୋଇବ । ମୁଁ ମୁଣ୍ଡ ଚିପି ଦେବି ।

ପ୍ରତାପ ॥ ସେକ୍ରେଟେରିଏଟ ରେ ଆଜି ଖାଲି ଉପର ମହଲା ତଳ ମହଲା ହେଇ ଗୋଡ଼ଟା ବନ୍ଧୁଚି ।

ସିକତା ॥ ( ହସି ଆଖି ମାରି )
ହଉ ଗୋଡ଼ ବି ଚିପି ଦେବି, ଚାଲ । ଗୋଡ ହାତ ଧୋଇ ଆସିଲେ ଖାଇବ ।

[ପ୍ରତାପ ଚାଲିଯାଇଛି ଭିତରକୁ, ତା ପଛପଟୁ ବୃଦ୍ଧ ସୀତାନାଥଙ୍କ ପ୍ରବେଶ]

ସୀତାନାଥ ॥ କ'ଣ ପୁଣି ଗୋଟାଏ ଯୁଦ୍ଧ ଲାଗିଗଲା ?

ସିକତା ॥ କୋଉ ଯୁଦ୍ଧ ?

ସୀତାନାଥ ॥ ତମର ଅଫିସର ଯୁଦ୍ଧ !

ସିକତା ॥ ସେଇଟା କ'ଣ କେବେ ଶେଷ ହେବ ?

ସୀତାନାଥ ॥ କିଏ ମଲା ? କୌରବମାନେ ନା ପାଣ୍ଡବମାନେ ?

ସିକତା ॥ ତାଙ୍କୁ ସସ୍‌ପେଣ୍ଡ କରି ଦିଆ ଯାଇଛି ।

ସୀତାନାଥ ॥ (ଖାତସ୍ତ ହ ଭାବେ) ଓ... କେହ୍ମ ମରି ନାହାନ୍ତି ?

ସିକତା ॥ କୋଉ ଅଫିସରକୁ ଯାଇ ଗୁଟୁଡ଼ାଏ ମାରିଲେ ।

ସୀତାନାଥ ॥ କାହାକୁ... କୌରବମାନଙ୍କୁ ?

ସିକତା ॥ ଜାକୋବ ମହାପାତ୍ରଙ୍କୁ, ସେଇଥି ପାଇଁ ।

ସୀତାନାଥ ॥ ରୁଟି ହେଲାଣି ?

ସିକତା ॥ ଟିକିଏ ଅପେକ୍ଷା କର । ମୁଁ ତାଙ୍କୁ ଖାଇବାକୁ ଦେଇଦିଏ । ତମେ ସେଇ ପଛଘରେ ବସିଥାଅ, ମୁଁ ରୁଟି ତରକାରି ନେଇ ସେଇଠି ଦେଇ ଆସିବି ।

ସୀତାନାଥ ।। ନା, ଖାଇବାକୁ ଦବୁ କାହିଁକି ? ତମର ଇଚ୍ଛା ମୁଁ କେମିତି ଶିଘ୍ର ମରିଯାଏ !

ସିକତା ।। ମୁଁ ଗୃହସ୍ଥ ତ ତମେ ମରିଯାଅ ବୋଲି ? (କାଂନ୍ଦିଲା ଭଳି)

ସୀତାନାଥ ।। ବୁଢା ହେଲିଣି ବୋଲି ମତେ ତମେ ଘୃଣା କରୁଚ, ନାହିଁ ?

ସିକତା ।। (ହସି) କାହିଁ, ନା ତ । ବେଳେ ବେଳେ ଚଢ଼ି ମାଡ଼ିଲେ ଏମିତି କହୁ ଦଏନା ! ନ ହେଲେ ମୁଁ ତୁମକୁ ଭକ୍ତି କରେ ।

ସୀତାନାଥ ।। ଊଁ ଅଧୁନିକ ନା ? ସେଇଥି ପାଇଁ !

ସିକତା ।। ତଥାପି ମୁଁ ତୁମକୁ ଭଲ ପାଉଛୁ ।

ସୀତାନାଥ ।। ସେଇଥିପାଇଁ ପଛ ଘରଟା ଛାଡ଼ି ଦେଇଚ ?

ସିକତା ।। ଏଇ ଅଗ ଘରଟାରେ ଯାହାସବୁ ଘଟୁଛି...ତାକୁ ତମେ ସହି ପାରିବନି । ତେଣୁ ମୋ ମତରେ ତମପାଇଁ ପଛ ଘରଟା ହିଁ ଭଲ ।

ସୀତାନାଥ ।। ଚାଲ ମା ... ଶୋକ ହେଇ ଦୁର୍ବଳ ଲାଗୁଚ ।

[ସୀତାନାଥ ଆଗେ ଆଗେ ଓ ସିକତା ପଛେ ପଛେ ଯାଇଛନ୍ତି ।]

● ମଞ୍ଚ ଅନ୍ଧକାର ●

।। ଛେଦନ ।

# ବିଶ୍ୱରୂପ ଦର୍ଶନ



[ମଞ୍ଚ ଆଲୋକିତ ହେଲା । ପୂର୍ବର ସେଇ ଘର । କିନ୍ତୁ ସାଜସଜ୍ଜା ଟିକିଏ ଫିକା ପଡ଼ିଯାଇଛି । ଆସବାବ ପତ୍ର କମି ଯାଇପାରେ । ସମସ୍ତ ସେଇମିତି ଏକ ସନ୍ଧ୍ୟା । କିନ୍ତୁ ଆଉ ଦିନେ — ଏଇ ସନ୍ଧ୍ୟାରେ ଶୁଣାଗଲା ବର୍ଷାର ଜନ୍ମଦିନ ପାଇଁ ଉତ୍ସବ । ଏକ ପାର୍ଟିର ଆୟୋଜନ କରାଯାଇଛି । ଚେୟାର ଆଉ ଦୁଇ ତିନିଟା ମଞ୍ଚ ଉପରକୁ ଅଣାଯାଇ ପାରେ ଏବଂ ବିଭିନ୍ନ ସ୍ଥାନରେ ଚେୟାର ଗୁଡ଼ାକୁ ସଜାଇ ରଖାଯାଇପାରେ । ଦେଖାଯିବ ଯେମିତି ଘରସାରା ଚୌକିରେ ପୂର୍ଣ୍ଣ । ମଞ୍ଚ ଆଲୋକିତ ହେଲାପରେ ଦେଖାଗଲା ଗୋଟାଏ କୋଣରେ ବସିଛନ୍ତି ଫବର୍, ସିକତା ଓ ଜୋସେଫ୍ — ତାସ୍ ଖେଳୁଛନ୍ତି । ମଝିରେ ଗ୍ରେଟ୍ ଷ୍ଟୁଲ୍ ଏବଂ ତିନିଟା କୋକାକୋଲା ବୋତଲ । ବର୍ଷା ଭିତରେ ।]

ଫବର୍ ॥ (ଡାକୁଛି) ବର୍ଷା !

ଜୋସେଫ୍ ॥ (ବର୍ଷାକୁ) ଜଲ୍ଦି ଆସ ।

ସିକତା ॥ ଖେଳ ବନ୍ଦ ହୋଇଗଲା ।

ଫବର୍ ॥ ନଂବର ଓ୍ୱାନ୍ ଡାକୁଛନ୍ତି, ଜଲ୍ଦି ଆ' ।

ବର୍ଷା ॥ (ଭିତରୁ) କିଏ ଡାକୁଛନ୍ତି ?

ଜୋସେଫ୍ ॥ ମୁଁ,

ବର୍ଷା ॥ ମୁଁ କିଏ ?

ଜୋସେଫ୍ ॥ ମୁଁ ଜୋସେଫ୍ ।

ବର୍ଷା ॥ (ଭିତରୁ) ବାଣ୍ଡିଆ ।

ସଂବିତ୍ ॥ ବର୍ଷା ଅଇଲାଣି ।

ବର୍ଷା ॥ (ପ୍ରବେଶ କରି) ନା, ମୁଁ ଜୋସେଫ୍ ସାଙ୍ଗରେ ପାର୍ଟନର୍ ହେବିନି ।

ଜୋସେଫ୍ ॥ କାହିଁକି ?

ବର୍ଷା ॥ ତମେ ମତେ ଗାଳି ଦେଉଚ ।

ଜୋସେଫ୍ ॥ ଖେଳରେ ଭୁଲ କଲେ ଗାଳି ଦେବିନି ?

ବର୍ଷା ॥ ତମ ସାଙ୍ଗରେ ମୋର କଟି ।

ସଂବିତ୍ ॥ ମୋ ସାଙ୍ଗରେ ଖେଳିବୁ ?

ବର୍ଷା ॥ ହଁ ।

ସିକତା ॥ ତା' ହେଲେ ଜୋସେଫ୍, ତମେ ଆଉ ମୁଁ ।

ଜୋସେଫ୍ ॥ ପୁଣି ଥରେ ନୂଆ ଖେଳ ଆରମ୍ଭ କରିବା ।

ସିକତା ॥ ହଁ

ସଂବିତ୍ ॥ ଜୋସେଫ୍ ଆଉ ତମେ, ବର୍ଷା ଆଉ ମୁଁ ।

ଜୋସେଫ୍ ॥ ମୁଁ ବାଣ୍ଟୁଛି ତାହେଲେ (ତା'ସ ବାଣ୍ଟିବା ଆରମ୍ଭ କଲା)

ସିକତା ॥ ଶୁଣିଲଣି ବର୍ଷା, ଜୋସେଫ୍ କୁଆଡ଼େ ଦିଲ୍ଲୀରୁ ନୂଆ ଟେପ୍‌ରେକର୍ଡ଼ର ଆଣିଛନ୍ତି ।

ବର୍ଷା ॥ (ତାସ ଦେଖୁ ଦେଖୁ)ଦିଲ୍ଲୀରେ କ'ଣ ଭଲ ଟେପ୍ ମିଳେ ?

ସଂବିତ୍ ॥ ବମ୍ବେରେ ଭଲ ମିଳିବା କଥା ।

ଜୋସେଫ୍ ॥ କାହିଁକି ? ଦିଲ୍ଲୀରେ କାହିଁକି ନ ମିଳିବ ?

ସଂବିତ୍ ॥ କାହିଁକି ନ ମିଳିବ ? ସିକ୍‌ସଟୀନ୍ ।

ସିକତା ॥ ଏଇଟିନ୍ ।

ବର୍ଷା ।। ନାଇନଟୀନ୍ !

ସବିତ୍ ।। ନାଇନଟୀନ୍ ଡାକଦେଲୁ , ଖେଳ ଜିତି ପାରିବୁ ?

ବର୍ଷା ।। କାହିଁକି ମତେ ଖେଳ ଜଣାନାଇଁ ବୋଲି ଭାବୁଚୁ ?

ସବିତ୍ ।। ତା' ବୋଲି ପାର୍ଟନର ହାତରୁ ଛଡ଼ାଇ ନେଇଯିବୁ ?

ସିକତା ।। ଦେଖ ଜୋସେଫ୍— ଯଦି ଡାକିବାର ଅଛୁ ଡ଼ାକ କୋଡ଼ିଏ ।

ଜୋସେଫ୍ ।। ନା, ଟ୍ରାମ୍ପ ଡ଼ିକ୍ଲେୟାର୍ କର ।

ବର୍ଷା ।। ସେଭେନ୍ ଥ କାର୍ଡ ।

ସିକତା ।। ଟ୍ରାମ୍ପ ଲୁଚାଅ ।

ବର୍ଷା ।। ଲୁଚେଇବି କାହିଁକି ?

ସଂବିତ୍ ।। ସେଭେନ୍ଥ କାର୍ଡର ଟ୍ରାମ୍ପ ଲୁଚାଇବାକୁ ପଡ଼ିବ ।

ଜୋସେଫ୍ ।। ୟେସ୍, ଟେକ୍ ଏ ଗ୍ରିନ୍ସ୍ , ବର୍ଷା !

ବର୍ଷା ।। ମତେ କୋଉ କଥା ଲୁଚେଇ ଆସେନା ।

ସିକତା ।। କିନ୍ତୁ ଏଇଟା ଖେଳ । ଟ୍ୱେଣ୍ଟି ନାଇନ୍ !

ସଂବିତ୍ ।। ଏଇଟା ଗୋଟେ ବୁ-ଦ୍-ଧୁ । ହାରି ଯିବ ।

ବର୍ଷା ।। (କାର୍ଡ ଲୁଚେଇ) ଦେଖିବା କେମିତି ହାରିଯିବ ?

ସଂବିତ୍ ।। ପଡ଼ିଲା ଛଡ଼ିଆ ଗୋଲାମ

ସିକତା ।। ମୋର ଆଠ

ବର୍ଷା ।। ମୋ ପାଖରେ ଛଡ଼ିଆ ନାହିଁ

ସଂବିତ୍ ।। ନାହିଁତ ନାହିଁ କହୁ ହଉଚୁ କାଇଁକି ? (ଚିଡ଼ିଯାଇ)

ଜୋସେଫ୍ ।। ମୁଁହରେ ବାଡ଼ିବତା ନାହିଁ ।

ସିକତା ।। ସେଭେନ୍ ଥ କାର୍ଡଟା ଖୋଲି ଦିଅ— (ନିଜେ ଖୋଲିଦେଇ) ଛଡ଼ିଆ ।

ଜୋସେଫ୍ ।। ଛଡ଼ିଆ ଟିକା

ସଂବିତ୍ ।। ତମର କାର୍ଡ ଦିଅ ନମ୍ବର ଓ୍ୱାନ୍

ଜୋସେଫ୍ ॥ ଷ୍ଟୁଡ଼ିଲ, ନଅ ସବ୍ରତ୍, ତମେର ପାଳି ।

ସଂବ୍ରତ୍ ॥ ଫୋର ଏସେସ୍ ।

ସିକତା ॥ (ତାସ୍ ପକେଇ) ରଏଲ୍ସ—

ଜୋସେଫ୍ ॥ ଆଜି ପାରିବ ବର୍ଷା ?

ବର୍ଷା ॥ କାହିଁକି ପାରିବନି ?

ସିକତା ॥ ରଏଲ୍ସ ମାନେ ଫୋର୍ ଏସେସ୍, ତମକୁ ଚେଞ୍ଜି ଏସେସ୍ କରିବାକୁ ପଡ଼ିବ ।

ବର୍ଷା ॥ କାହିଁକି ?

ସଂବ୍ରତ୍ ॥ ତୋ ମୁଣ୍ଡ,ଗଣ୍ଡି ସ୍ତ୍ରୀ ସାଙ୍ଗରେ ମୁଁ ଖେଳିବନି, ବୁଦ୍-ଦୁଟେ !

ବର୍ଷା ॥ ଆଁ···ମତେ କାହିଁକି ବୁଦ୍-ଦୁ କହିଲ-ମୁଁ ଖେଳିବନି ଯା'—
(ତାସ୍ ଫୋପାଡ଼ି ଦେବାକୁ ଯାଉଛି)

ଜୋସେଫ୍ ॥ ତା ହେଲେ ମାନ, ସିକତା ଆଉ ମୁଁ ମିଶିଲେ ତମକୁ ହରେଇ ଦେବୁ ।

ବର୍ଷା ॥ ମୋର ସେ ତାସ୍ ଖେଳ ଦରକାର ନାହିଁ, ଆ'ରେ ଭାଇ- ଆମେ ଲୁଚ ଗୁଣିବା ।

ସବ୍ରତ୍ ॥ ଭାଉଜଙ୍କୁ ଡାକୁନୁ ?

ସିକତା ॥ ସବ୍ରତ୍···ପ୍ଲିଜ ତମେ ଯାଆ ଟିକିଏ ।

[ବର୍ଷା ଆଉ ସବ୍ରତ୍ ଯାଉଛନ୍ତି]

ସିକତା ॥ ଦିଲ୍ଲୀରୁ କେବେ ଫେରିଲ ?

ଜୋସେଫ୍ ॥ ଆଜି ।

ସିକତା ॥ ଗୋଟାଏ କଥା ପଚାରିବି···କିଛି ଭାବିବନି ?

ଜୋସେଫ୍ ॥ ପଚାର ।

ସିକତା ॥ ମତେ ଦେଖିଲେ ତମକୁ କ'ଣ ମନେ ହୁଏ ?

ଜୋସେଫ୍ ॥ ସିକତା ଭଳି ।

ସିକତା ।। ଓ-ନୋ' ।

ଜୋସେଫ ।। ତା'ମାନେ ?

ସିକତା ।। ବର୍ଷା ଭଲ ମନେ ହୁଏନା ?

ଜୋସେଫ ।। ତମେ···ବର୍ଷା ଭଲ···

ସିକତା ।। ଆଚ୍ଛା, ଗୁଡ଼, ମୋ ଶାଢୀ ?

ଜୋସେଫ ।। ଶାଢୀ···

ସିକତା ।। ବାଃ ରେ ! ମୁଁ କହିଥିଲି ଦିଲ୍ଲୀ ଯିବା ପୂର୍ବରୁ···

ଜୋସେଫ ।। ଓଃ ··· ମୁଁ ଭୁଲି ଯାଇଛି ।

ସିକତା ।। ମୁଁ ଜାଣେ ତମେ ଭୁଲିଯିବ ।

ଜୋସେଫ ।। କିନ୍ତୁ ମୁଁ ଜାଣି ଜାଣି ଭୁଲିନି ।

ସିକତା ।। ତମେ ମତେ ଘୃଣା କରୁଚ ?

ଜୋସେଫ ।। ହଠାତ୍ ତମର କ'ଣ ହେଲା ସିକତା ?

ସିକତା ।। ତା'ମାନେ ତମେ ମତେ ଭଲ ବି ପାଉନା ଏବଂ ଘୃଣା ବି କରୁନା ?

ଜୋସେଫ ।। ହେଇପାରେ ।

ସିକତା ।। କିନ୍ତୁ···

ଜୋସେଫ ।। ମୁଁ କୌଣସି ନାରୀକୁ ବିଶ୍ୱାସ କରେନା

ସିକତା ।। ସମସ୍ତଙ୍କୁ ତୁମେ ବର୍ଷା ବୋଲି ଭାବୁଚ ?

ଜୋସେଫ ।। ମୁଁ ଚାହିଁଥିଲି ବର୍ଷାକୁ ବିବାହ କରିବାପାଇଁ ।

ସିକତା ।। ତମେ ମିଛ କହୁଚ ।

ଜୋସେଫ ।। ବର୍ଷା ମୋତେ କଥା ଦେଇଥିଲା ।

ସିକତା ।। ସେଇଟା ବି ମିଛ ।

ଜୋସେଫ ।। କିନ୍ତୁ ଆମର ବିବାହ ତାରିଖ ବି ଠିକ ହୋଇଯାଇଛି ।

ସିକତା ।। ମୁଁ ଯେତେବେଳେ କୁମାରୀ ଥିଲି ଏମିତି ଅନେକ କାହାଣୀ ଶୁଣିଚ ।

ଜୋସେଫ ।। ତମେ ପିଲାଦିନେ ଖାଲ୍ ଗ୍ଲାସ୍ ଥିଲ ବୋଲି ଜୀବନରେ ବେଶୀ ଠକିଛନ୍ତି ।

ସିକତା ।। ଜୋସେଫ !

ଜୋସେଫ ।। ମୁଁ ଜାଣେ ତମେ ଏ ଘରେ କିପରି ଶ୍ୱାସରୁଦ୍ଧ ହେଉଚ !

ସିକତା ।। କିନ୍ତୁ ମୁଁ ବନ୍ଦୀ ଥିଲି ବଞ୍ଚିବା ପାଇଁ ...
... ପୃଥିବୀକୁ ଦେଖିବା ପାଇଁ ।

ଜୋସେଫ ।। ଏମିତି ସ୍ୱପ୍ନ ଦେଖି ଦେଖି ଶେଷରେ ତମର ଏ ଅବସ୍ଥା ।

ସିକତା ।। ମୁଁ ଏ ଭିତରେ କ'ଣ ବୁଢ଼ି ଯାଇଛି ?

ଜୋସେଫ ।। ଅସମ୍ଭବ ଭାବରେ ।

ସିକତା ।। କଳା ପଡ଼ି ଯାଇଛି ?

ଜୋସେଫ ।। ଆନିମିକ୍ ଦିଶୁଛ !

ସିକତା ।। ଉପାୟ ନାହିଁ ।

ଜୋସେଫ ।। ଶୁଣୁଚ ତମେ ଆଜି କାଲି ଘରର ସବୁ ଖର୍ଚ୍ଚ ଚଳାଉଛ ?

ସିକତା ।। ଉପାୟ ନାହିଁ ।

ଜୋସେଫ ।। ତମେ ଦିଲ୍ଲୀ ଯିବ ?

ସିକତା ।। ଯାଇ କଣ କରିବି ?

ଜୋସେଫ ।। ତମେ ସେଠି ସେଲ୍ସ୍ ଡିପାର୍ଟମେଣ୍ଟରେ ଚାକିରି ପାଇବ ।

ସିକତା ।। ମୁଁ କାହାରିକୁ ଚିହ୍ନିନି ...

ଜୋସେଫ ।। ମୋ ସାଙ୍ଗରେ ଯିବ, ମୁଁ ଚିହ୍ନିଛି ।

ସିକତା ।। ଜୋସେଫ୍ !!

ଜୋସେଫ ।। ଏତିକି ସାର୍ଟନେସ୍ ଥାଇ ତମେ ଜୀବନଟାକୁ ଭୁବନେଶ୍ୱରର ଏଇ ଟାଇପ୍—ଆ ଘରେ ବ୍ୟର୍ଥ କରିବ ?

ସିକତା ।। କିନ୍ତୁ ସନ୍ତୋଷ !

ଜୋସେଫ ।। ସନ୍ତୋଷ ଭାଇଙ୍କ ପ୍ରତି ତୁମର ଆନ୍ତର ଆସକ୍ତି ଅଛି ?

ସିକତା ।। ତମେ ତାଙ୍କୁ ଚିହ୍ନିନା ଜୋସେଫ୍ ! ତାଙ୍କ ପାଖରେ ଅଦ୍ଭୁତ ପରସନାଲିଟୀଟାଏ ଅଛି !

।। ବାଷଠି ।।

ଜୋସେଫ ॥ ଯାହାର ମୂଲ୍ୟ ଅଚଳ ଶହେ ଟଙ୍କାର କ୍ରାଣୀଣ୍ଟି ଏବଂ ଶେଷରେ ସେଇଟା ଖ୍ୱ...

ସିକତା ॥ କାରଣ ତମେ ବଡ଼ ଘରର ପୁଅ । ତମର ଗାମ୍ଭୀର୍ଯ୍ୟ ଅଛି, ସେଇ ଗାମ୍ଭୀରତା ଭିତରେ ଭଲ ଆଉ ମନ୍ଦ ବେଶ୍ ଲୁଚି ଯାଇ ପାରୁଛି ।

ଜୋସେଫ ॥ ଏବଂ ମୁଁ ଯଦି କହେ ତମର ଏଇଟା ଇନ୍‌ଫିଅରିଟି କମ୍ପ୍ଲେକ୍ସ୍ !

ସିକତା ॥ ତମ ମୁହଁରେ ଏଇଟା ଶୋଭା ପାଏ ।

ଜୋସେଫ ॥ ଆଉ ଦଶ ଦିନ ପରେ ମୁଁ ଦିଲ୍ଲୀ ଚାଲିଯିବି ।

ସିକତା ॥ ଜାଣିଛି, ଅଫିସରେ ଶୁଣିଲି ତମେ ଡ଼ି.ସି. ଏମ୍.ରେ ଯାଉଚ ।

ଜୋସେଫ ॥ ଦିଲ୍ଲୀରେ ଏକ ଛୋଟ କୋଠା ଭିତରେ ମୁଁ ତମ କଥା ଭାବିବି ।

ସିକତା ॥ ସେଇଟା ମୋର ଭାଗ୍ୟ ।

ଜୋସେଫ ॥ ମୋ' ସାଙ୍ଗରେ ଅସି ପାରିବ ?

ସିକତା ॥ ଏ ଘର ଛାଡ଼ି ଦେଇ ?

ଜୋସେଫ ॥ ଆଉ ଏକ ଘରକୁ !

ସିକତା ॥ ତମେ ...... 

ଜୋସେଫ ॥ ୟୁରୋପରେ ଜଣେ ନାରୀ ଅନେକ ଥର ବିବାହ କରି ପାରୁଛି ।

ସିକତା ॥ ଦିଲ୍ଲୀ !

ଜୋସେଫ ॥ ପୁଣି ଥରେ ଜୀବନଟାକୁ ଗଢ଼ିବା ପାଇଁ ଚେଷ୍ଟା କର ।

ସିକତା ॥ ସିକତା ମହାପାତ୍ର !

ଜୋସେଫ ॥ ହାଇ ସୋସାଇଟୀ, ମଟର କାର— କନ୍ନାଟ୍ ପ୍ଲେସ୍ ।

ସିକତା ॥ ଜୋସେଫ୍ ! ତମେ ମୋତେ ଟେମ୍ପ୍ଟ୍ କରୁଛ ?

ଜୋସେଫ ॥ ନା,

ସିକତା ॥ ଆଉ କ'ଣ କରୁଛ ?

ଜୋସେଫ ।। ତମକୁ ଜୀବନର ଅପୂର୍ଣ୍ଣ ଅଧ୍ୟାୟ ସମ୍ପର୍କରେ କହୁଛି ।

ସିକତା ।। ସ୍ୱପ୍ନ ଦେଖୁଛ ?

ଜୋସେଫ ।। ସାହସର ଅଭାବରେ ତାକୁ ସ୍ୱପ୍ନ କୁହାଯାଇ ପାରେ—

ସିକତା ।। ଏଇ ଅବସ୍ଥାରେ ମତେ ତମେ ଗ୍ରହଣ କରି ପାରିବ ?

ଜୋସେଫ ।। ମୁଁ ଏତେଟା ନୀଚ ନୁହେ ।

ସିକତା ।। ଜୋସେଫ୍ ! ମୁଁ ସ୍ୱପ୍ନଦାମୀ ମାନଙ୍କୁ ଭଲପାଏ ।

ଜୋସେଫ ।। ମୁଁ ରାଜି ।

ସିକତା ।। ତା ହେଲେ ବର୍ଷାକୁ ତମେ କାହିଁକି ଭଲ ପାଉଥିଲ ?

ଜୋସେଫ ।। ଭଲ ପାଇବା ପଛରେ କୌଣସି ଯୁକ୍ତି ନଥାଏ ।

ସିକତା ।। ବେଳେ ବେଳେ ସ୍ୱପ୍ନ ଦେଖିବା ପାଇଁ ଇଚ୍ଛା ହୁଏ ।

ସିକତା ।। ତା' ହେଲେ ମୁଁ ତମ ସାଙ୍ଗରେ ଚାଲିଯିବି ?

ଜୋସେଫ ।। ଓ... ଆଇ ଆମ୍ ସୋ' ଗ୍ଲାଡ୍ !

ସିକତା ।। ମୁଁ ଏ ବନ୍ଧନ ଛିଣ୍ଡି ତମ ସାଙ୍ଗରେ ଦିଲ୍ଲୀ ପର୍ଯ୍ୟନ୍ତ ଉଡ଼ି ଯିବାକୁ ଚାହେଁ ।

ଜୋସେଫ ।। ଆମେ ଏକ ନୂଆ ସଂସାର ଗଢିବା ।

ସିକତା ।। ସେଇଠି ଦୁଃଖ ନଥିବ, ମୃତ୍ୟୁ ନଥିବ, ଲୁହ ନଥିବ ।

ଜୋସେଫ ।। ଖାଲି ଅଦ୍ଭୁତ ରଙ୍ଗର ଫୁଲ ଫୁଟୁ ଥିବ ।

ସିକତା ।। ଆମେ ଉଡ଼ା ଜାହାଜରେ ଯିବା ? ମୁଁ କେବେ ଚଢିନ !

ଜୋସେଫ ।। ଭୁବନେଶ୍ୱରରୁ ସିଧା ଫ୍ଲାଇଟ୍ — ଥ୍ରୁ କାଲ୍‌କାଟା !

ସିକତା ।। ଆକାଶରେ ଉଡ଼ିଲେ ପୃଥିବୀଟା ଛୋଟ ମନେହୁଏ, ନାହିଁ ?

ଜୋସେଫ ।। ଖୁବ୍ ଛୋଟ... କାଗଜ ଘର ପରି ...

ସିକତା ।। ତମର ସେଇଠି ଦରମା କେତେ ?

ଜୋସେଫ ।। ଆରମ୍ଭରେ ବାରଶହ ।

ସିକତା ।। ଓ ! ବାରଶହ ... ସୁନ୍ଦର

ଜୋସେଫ ।। ତମେ ଦୁହେଁ ରୋଜଗାର କଲେ ଛଅ ମାସରେ ଯେତେ ହେବ,...ମାସରେ ସେତକ

ସିକତା ॥ ମୁଁ ଖାଲି ଘରେ ବସି ନେରୁଡ଼ା ଗ୍ରାମ ବନେଜାରା ଓ ସ୍ୱପ୍ନ ଦେଖିବି ।

ଜୋସେଫ ॥ ମୁଁ ଅଫିସରୁ ଫେରିଲେ ଆମେ ଗାଡ଼ି ନେଇ ବୁଲିବାକୁ ଯିବା ।

ସିକତା ॥ ତମେ ମତେ କେବେ ହେଲେ ପଛ କଥା ପଚାରିବନି ?

ଜୋସେଫ ॥ ଆମେ ଅତୀତକୁ ଆଉ ଖୋଜିବାନି ।

ସିକତା ॥ ଖାଲି ବର୍ତ୍ତମାନ ସାଙ୍ଗରେ ଦୌଡ଼ିବା ।

ଜୋସେଫ ॥ ଦରକାର ହେଲେ ସମୟକୁ ପଛରେ ପକେଇ ଦୌଡ଼ିବା ।

ସିକତା ॥ ଖାଲି ଦୌଡ଼ିବା ?

ଜୋସେଫ ॥ ହଁ ।

ସିକତା ॥ ମୁଁ ଯଦି କ୍ଲାନ୍ତ ହୋଇଯାଏ ?

ଜୋସେଫ ॥ ସେଠି କ୍ଲାନ୍ତିର ପ୍ରଶ୍ନ ନାହିଁ

(ନୀରବତା)

ସିକତା ॥ ତୁମର ବୟସ କେତେ ?

ଜୋସେଫ ॥ କାହିଁକି ?

ସିକତା ॥ ବୟସ କେତେ ?

ଜୋସେଫ ॥ ଭବାନ୍ତୁ ପାଇଁ ବୟସଟା ଏକ ପାହାଡ଼ ନୁହେଁ ।

ସିକତା ॥ ସେଥିରେ କେବଳ ପାହାଡ଼ଟା ଅଛି ଟଙ୍କାର ଓ ସମ୍ମାନର ।

ଜୋସେଫ ॥ ମୁଁ ଏ ସମ୍ପର୍କରେ ଗଣତନ୍ତ୍ରକୁ ବିଶ୍ୱାସ କରେ ।

ସିକତା ॥ କେବଳ ସେକ୍ସରେ ତମେ ଗଣତନ୍ତ୍ର ଖୋଜୁଁଛ (ହସିଲା) ।

ଜୋସେଫ ॥ ନା, ମୁଁ ସେ କଥା କହୁ ନଥିଲି ।

ସିକତା ॥ (ଶକ୍ତଭାବେ) କହୁଥିଲ ସେଇଟାକୁ ବନ୍ଦ କରି ପାଞ୍ଚ ହଜାର ପେପର ବ୍ୟାକ୍ ଛପେଇଲେ ଏ ଦେଶର ଲୋକେ କିଣନ୍ତେ ।

ଜୋସେଫ ॥ ଏତେ ପ୍ରତିଶ୍ରୁତି ପରେ ତମେ ମତେ ଥଟ୍ଟା କରୁଛ ସିକତା ?

ସିକତା ॥ ପ୍ରତିଶ୍ରୁତି ? (ହସ) ତମର ଗୋଟିଏ ଆଶ୍ରମ ଖୋଲିବା ଉଚିତ । ଦାଢ଼ି ଅଛି, ମୁଣ୍ଡରେ କିଛି ବାଳ ଅଷ୍ଟାଦଶ ଶତାବ୍ଦୀ ଶୈଳୀରେ ବଢ଼େଇ ଦିଅ ।

ଜୋସେଫ ।। କିନ୍ତୁ ଏଇଟା ମୋର ଖାଲି ପ୍ରତିଶ୍ରୁତି ନୁହେଁ ।

ସିକତା ।। ଜୀବନରେ ମୁଁ ଅନେକ ପୁରୁଷ ଦେଖିଛି, ଲେଣ୍ଟ୍ ଅସ୍ ନ ସ୍ତାଙ୍କ୍ !

ଜୋସେଫ ।। ମୁଁ ଆଦୌ ନାଟକ କରୁନି, ବିଶ୍ୱାସ କର ।

ସିକତା ।। ଗୋଟିଏ ତୃତୀୟ ଶ୍ରେଣୀ ଉପନ୍ୟାସର ନାୟକ ବି ଏମିତି କୁହେ ।

ଜୋସେଫ ।। ସିକତା ?

ସିକତା ।। ବର୍ଷା ସାଙ୍ଗରେ କ'ଣ କରୁଥିଲ ?

ଜୋସେଫ ।। ମତେ ବିବାହ କରିବାପାଇଁ ବର୍ଷାର ଇଚ୍ଛା ନାହିଁ ।

ସିକତା ।। କାହିଁକି ? ସେ ନାଚ କ୍ଲାସକୁ ଯାଉନି ବୋଲି ? ବ୍ରହ୍ମଚାରୀ ସାଙ୍ଗରେ ବୁଲୁଛି ବୋଲି ?

ଜୋସେଫ ।। ସେଇଟା ବି ଗୋଟାଏ କାରଣ ।

ସିକତା ।। କାହିଁକି ସେଇଟା ତମ ପାଇଁ କାରଣ ହେଲା ?

ଜୋସେଫ ।। ସେଇଟା ସମାଜ ଗ୍ରହଣ କରି ପାରିବନି ।

ସିକତା ।। ତମର ନିଜତ୍ୱ କିଛି ନାହିଁ ?

ଜୋସେଫ ।। ବିବାହ ଏକ ସାମାଜିକ ଅନୁଷ୍ଠାନ ।

ସିକତା ।। ଏବଂ ମୁଁ ଏଇ ସାମାଜିକ ଅନୁଷ୍ଠାନରେ ବିଶ୍ୱାସ କରେନା, ପୁରୁଷ ଆଉ ନାରୀଙ୍କ ସଂପର୍କ ବିନା ବିବାହରେ ସ୍ଥାପନ କରାଯାଇପାରେ ।

ଜୋସେଫ ।। ସେଇଟା ବର୍ଷାର ଚରିତ୍ରରେ କଳଙ୍କ ବୋଲି ମୁଁ କହିବି ।

ସିକତା ।। କଳଙ୍କ ? କୋଉଟା ? କାହାପାଇଁ ?

ଜୋସେଫ ।। ସମସ୍ତଙ୍କ ପାଇଁ ।

ସିକତା ।। ପାପ ଆଉ ପୁଣ୍ୟ ବିଚାର କରିବା ପାଇଁ ତମେ କିଏ ?

ଜୋସେଫ ।। କିନ୍ତୁ ମୁଁ କହୁଥିଲି ନା କୌଣସି ଯୁକ୍ତି ଦେଇ ଭଲ ପାଇ ହୁଏନା ।

ସିକତା ॥ କିନ୍ତୁ ମୁକ୍ତ ହେଇ ତମେ ଇଭଙ୍କୁ ଆପଲ୍ ଖାଇବା ପାଇଁ ପ୍ରଲୋଭନ ଦେଖାଇ ପାର ?

ଜୋସେଫ ॥ ମତେ ଭୁଲ ବୁଝନ୍ତୁ ନି ।

ସିକତା ॥ ତମକୁ ଠିକ୍ ବୁଝିଛି ବୋଲି ଏବେ ସରଳ ସ୍ୱୀକାରୋକ୍ତି କରିପାରୁଛି ।

ଜୋସେଫ ॥ ନୋ ଜୋକ୍ସ୍ ସିକତା ! ଆଇ ଏମ୍ ସିରିଅସ୍ ।

ସିକତା ॥ ମୁଁ ବି ସିରିଅସ୍ଲି କହୁଛି ।

ଜୋସେଫ ॥ ତମେ ରାଜି ହେଲେ ଆଜି ରାତି ବି ଆମେ ଦିଲ୍ଲୀ ଫ୍ଲାଇ କରିନା...

ସିକତା ॥ ଗୋଟିଏ ସଂସାର ଭାଙ୍ଗି ଆଉ ଗୋଟିଏ ଗଢ଼ିବା ପାଇଁ ବେଶ ଉତ୍ସୁକ ଥାଅ ଦେଖୁଛି ।

ଜୋସେଫ ॥ ଗୋଟାଏ ନ ଭାଙ୍ଗିଲେ ଆଉ ଗୋଟାଏ ଗଢ଼ିବ କେମିତି ?

ସିକତା ॥ ତମ ମାନଙ୍କର ଗଢ଼ିବା ଶକ୍ତି ଆନ୍ତରିକ ଥାଏନି, ପ୍ଲିଜ — ସାଥି, ଆଉ କେବେ ଏ ଘରର ସୀମା ମାଡ଼ନ୍ତିନି ।

ଜୋସେଫ ॥ ତମେ ମତେ ପରୀକ୍ଷା କରୁଛ ?

ସିକତା ॥ ମୁଁ ଅପସରା ନୁହେଁ ।

ଜୋସେଫ ॥ ଏଇ ମୁହୂର୍ତ୍ତ ପାଇଁ ...... ଆଜି ଏଇ ଜନ୍ମ ଦିନ ଉତ୍ସବ ପାଇଁ ... ।

ସିକତା ॥ ଜୋସେଫ ।

ଜୋସେଫ ॥ ମୁଁ ଜାଣେ ତମେ ମତେ ଭଲ ପାଅ ।

ସିକତା ॥ ହଁ କହିଲେ ଯିବ ? କୁହ ଆଉ କେବେ ଆସିବନି ? କେବେ ଆଉ ବର୍ଷା ପାଇଁ ପ୍ରେମିକ ହେବନି ? ...

ଜୋସେଫ ॥ କୁହ ଥରେ ମୋତେ ଭଲ ପାଅ ବୋଲି ...

ସିକତା ॥ ତମେ ପୁରୁଷ, ଡ଼ିଃ ସିଃ ଏମ୍ଃର ହେବାକୁ ଯାଉଥିବା ବଡ଼ ଅଫିସର୍ ... ତୁମର ଷ୍ଟାର୍ଟିଂ ବାରଶହ ଟଙ୍କା ... ଛି ଜୋସେଫ ! ତମ ବାପାଙ୍କ ଅଫିସର ଜଣେ ଷ୍ଟେନୋ ପାଇଁ ଏତେ ଶ୍ରେଷ୍ଠ ହେଇ କାକୁତି ମିନତି କରୁଛ ?

॥ ଶତଷଠି ॥

ଜୋସେଫ ।। ମୁଁ ଗଣତନ୍ତ୍ରରେ ବିଶ୍ୱାସ କରେ । ମୁଁ ସାମ୍ୟବାଦରେ ବିଶ୍ୱାସ କରେ ।

ସିକତା ।। (ଅତି ନାଟକୀୟ ସ୍ୱରରେ) ମୁଁ ତମକୁ ଭଲ ପାଏ ।

ଜୋସେଫ ।। (ଆଖି ବୁଜି) ଆଉ ଥରେ କୁହ ।

ସିକତା ।। ମୁଁ ତମକୁ ଭଲ ପାଏ !!

ଜୋସେଫ ।। ସିକତା ! ମୋର ଦେହେଶ୍ୱ ଅଛି, ଯୋଗ୍ୟତା ଅଛି... ଅଥଚ ମୁଁ ପ୍ରେମ କରି କୋଉଠି ସଫଳ ହେଇ ପାରିଲିନି ।

ସିକତା ।। ମୁଁ ତମକୁ ପ୍ରେମ କରେ । ସାଅ··ପ୍ଲିଜ୍ ··· ବିଶ୍ୱାସ କରି ···

ଜୋସେଫ ।। ବର୍ତ୍ତମାନ ଗୁଡ୍‌ନାଇଟ୍ ?

ସିକତା ।। ମୁଁ ଉପକୃତ ହୁଅନ୍ତି ।

ଜୋସେଫ ।। ଗୁଡ୍ ନାଇଟ୍ !

ସିକତା ।। ଗୁଡ୍ ନାଇଟ୍ !

[ ଜୋସେଫ ଯାଉଛନ୍ତି ଏବଂ ସେଠିକି ସିଧେ ବାହାରୁ ଆସିଛନ୍ତି ସନ୍ତାପ । ]

ସନ୍ତାପ ।। ସିକତା !

ସିକତା ।। ଆରେ ! ତମେ ଆଜି ଏତେ ଡେରିରେ ଫେରିଲ ଯେ ?

ସନ୍ତାପ ।। ନ ଫେରି ଥିଲେ ଭଲ ଲାଗି ଥାଆନ୍ତା ?

ସିକତା ।। ଆଜି ବର୍ଷାର ଜନ୍ମଦିନ । ସେତେବେଳେ ଅଫିସରେ କାମ କଲି ଭଲି ···

ସନ୍ତାପ ।। ମୁଁ ସବୁ ବାରଣହେ ଝଙ୍କା ଦରମା ପାଉ ଥାଆନ୍ତି··· ତା' ହେଲେ ମୋର ପ୍ରୟୋଜନ ଥାଆନ୍ତା !

ସିକତା ।। ସନ୍ତାପ !

ସନ୍ତାପ ।। ( କିଛିଏ ପରେ ) ମୁଁ ତମକୁ ଅନେକ ଆଗରୁ କହିଛି ନା ସିକତା ! ତମେ ଚାହିଁଲେ ଯାଇପାର ।

ସିକତା ।। ମୁଁ ଆଜିର ଦିବାପାଇଁ ଚାହିଁନି ।

।। ଅଠଷଠି ।।

ସନ୍ତାପ ।। ଆଉ କେତେ ଦିନ ମତେ ଦୟା ଦେଖେଇ ରହିବ ?

ସିକତା ।। ଭ୍ରାଇବୋର୍ଣ୍ଣ ଡେମିସନ୍‌ଷ୍ଟା ଆସୁ ତମେ ରାଜନୀତିରେ ପୁଣିଥରେ ଯୋଗ ଦିଅ ; ନିଜ ଲୋକଙ୍କରେ ଠିଆ ହୁଅ— ମୁଁ··· ମିଶିବି ।

ସନ୍ତାପ ।। ସିକତା ! ଛଳନାର ଗୋଟାଏ ସୀମା ଅଛି ।

ସିକତା ।। ମୁଁ ଛଳନା କରୁଛି ବୋଲି କେମିତି ଜାଣିଲ ?

ସନ୍ତାପ ।। ଜାଣିବାର ପ୍ରଶ୍ନ ଉଠୁନି । ମୁଁ ନିଜେ ଦେଖିଛି ଶୁଣିଛି ।

ସିକତା ।। ବାଃ ରେ ! କୁହ କୁହ ସବୁ ଶୁଣି ସହିଯିବା ତା' ହେଲେ ?

ସନ୍ତାପ ।। କିଛି ଅସୁବିଧା ନାହିଁ ।

ସିକତା ।। ସନ୍ତାପ , ଆଜି ଜାଣି ତମର କ'ଣ ହେଉଛି ?

ସନ୍ତାପ ।। ମୁଁ ସନ୍ୟାସୀ ନୁହେଁ କି ମହାପୁରୁଷ ନୁହେଁ । ଜଣେ ସାମାନ୍ୟ ମଣିଷ !

ସିକତା ।। ଜଣେ ସାମାନ୍ୟ ମଣିଷ କ'ଣ ଏମିତି କଥା କହିବାରେ ସନ୍ଦେହ କରେ ?

ସନ୍ତାପ ।। କି ଆଶ୍ଚର୍ଯ୍ୟ ! ତମେ ମିନିଟଙ୍କ ତଳେ ଜୋସେଫ ସାଙ୍ଗରେ ଦିଲ୍ଲୀ ପର୍ଯ୍ୟନ୍ତ ଉଡ଼ିଯିବା ପାଇଁ ଚାହୁଁଥିଲ··· ଫୁସ୍ ଫୁସ୍ କରି ତାଙ୍କୁ ପ୍ରତିଶ୍ରୁତି ଦେଉଥିଲ ···

ସିକତା ।। ତମେ ସେଇ ସନ୍ତାପ ମହାନ୍ତି ଯିଏ ଛ'ବର୍ଷ ତଳେ ରେଭେନ୍‌ସା କଲେଜର ସଭାପତି ଥିଲ ?

ସନ୍ତାପ ।। ଆଜି ମୁଁ ପୁଣି ଥରେ ଜଳିବାକୁ ଚାହୁଁଛି ।

ସିକତା ।। ତମେ ସେଇ ଯୁବ ନେତା ଯିଏ ଝିଅ ମାନଙ୍କ ସ୍ୱାଧୀନତା ପାଇଁ କଲେଜରେ ଘଣ୍ଟା ଘଣ୍ଟା ଭାଷଣ ଦେଉଥିଲ ?

ସନ୍ତାପ ।। ସ୍ୱାଧୀନତାର ଅର୍ଥ ବିଶ୍ୱାସଘାତକତା ନୁହେଁ ।

ସିକତା ।। ସନ୍ତାପ !!

ସନ୍ତାପ ।। କିଛି କହିବାର ଅଛି ? (ଯାଉଥିଲା)

ସିକତା ।। ଛ' ବର୍ଷ ତଳେ ତମେ କନ୍‌ଭେଣ୍ଟ ଗେଟ୍‌ରେ 'ମୋ'ପାଇଁ ନେ' ମାସ ଉପହାରଟାରେ ଅନେକ ଅପେକ୍ଷା କରିଛ, ନାହିଁ ?

।। ଅଣସ୍ତରୀ ।।

ସଂତାପ ।। ମୁଁ ସେତେବେଳେ ତମକୁ ଭଲ ପାଉଥିଲି ।

ସିକତା ।। ମୁଁ ବି ଭଲ ପାଉଥିଲି । ଦିନେ ଖରାଟାରେ ଦୌଡ଼ି ଦୌଡ଼ି ଆସି ମୋ ପାଶ କରିବା ଖବରଟା ଶୁଣେଇଲ ।

ସଂତାପ ।। ମୁଁ ଗୋଟାଏ ବୋକା ବୋଲି ସ୍ୱୀକାର କରୁଛି ।

ସିକତା ।। ଏବଂ ଚବୁକ ତମର ଲାଲ ପଡ଼ି ଯାଉଥିଲା ।

ସଂତାପ ।। ମୁଁ ସେତେବେଳେ ଛୁଆ ଥିଲି ।

ସିକତା ।। ତମେ ଖବରଟା ଦେବା ଆଗରୁ ମୁଁ ଖବର ପାଉଥିଲି ।

ସଂତାପ ।। ଏବଂ ତମେ ମତେ ଅଣ୍ଠା କରିଥିଲ ।

ସିକତା ।। ଅନେକ ଦିନ ପରେ ତମେ କହିଥିଲ : ଘଟଣାଟା ପାଇଁ ତମକୁ ଖୁବ୍ ଲାଜ ଲାଗିଲା ଏବଂ ସେ ଦିନ ତମର ଆତ୍ମହତ୍ୟା କରିବା ଉଚିତ୍ ଥିଲା ।

ସଂତାପ ।। ଏ ପର୍ଯ୍ୟନ୍ତ ବଞ୍ଚି ଯାଇ ମସ୍ତବଡ ଭୁଲ କରିଚ ।

ସିକତା ।। ଆଉ ଦିନେ ଆମ ସ୍କୁଲରେ ବାର୍ଷିକ ଉତ୍ସବ ହେଉଥିଲା । ମୁଁ ଜି:ବି:ଏସ୍:ଙ୍କ "କ୍ୟାଣ୍ଡିଡ଼ା" ବହିରେ ଟାଇଟଲ୍ ରୋଲ୍ କରୁଥିଲି···ମନେ ଅଛି···? ମନେ ଅଛି ସେ ଦିନ ଆମଘର ପର୍ଯ୍ୟନ୍ତ ଛାଡ଼ିବା ପାଇଁ ଯାଇଥିଲ ଏବଂ ତମର ଟିକିଏ ଟିକିଏ ଛୁଆଁରେ ମୁଁ ଗରମ ହୋଇ ପଡୁଥିଲି ?

ସଂତାପ ।। ସେ ସଂତାପକୁ ତମେ ଅନେକ ଦିନରୁ ହତ୍ୟା କଲଣି ?

ସିକତା ।। ଏବଂ ତମେ ଅସ୍ୱୀକାର କରିଥିଲ ମୁଁ ଜଣେ ପ୍ରମୁଖା ଅଭିନେତ୍ରୀ ବୋଲି ?

ସଂତାପ ।। ସେ ଦିନର ସିକତା ହୋଇ ତମେ ଆଉ ରହି ପାରିନ ··· ତମେ ବର୍ତ୍ତମାନ ମୋର ବିରାଟ ସଂସାରକୁ ପୋଷୁଛ··· ।

ସିକତା ।। ତମେ ଅଯୋଗ୍ୟ, ଅପଦାର୍ଥ ବୋଲି ! ପିଲାଦିନେ ଖାଲି ତମେ ରାଗିବା ଶିଖିଥିଲ, ଷ୍ଟ୍ରାଇକ୍ କରିବା ଶିଖିଥିଲ, ଭାଷଣ ଶିଖିଥିଲ ।

ସଂତାପ ।। ଏ'ସ୍ତା କହିବା ପାଇଁ ରହିଥିଲ ? ନା କିଛି ବାକି ଅଛି ?

।। ସମାପ୍ତ ।।

ସିକତା ।। ମୁଁ ଯଦି କହେ ! ମୁଁ ଜୋସେଫ ପାଖରେ ଅଭିନୟ କରୁଥିଲି ?

ସନ୍ତାପ ।। ମିଛ କହିବାର ଶେଷ ସୀମା ରେଖାଟା ଡେଇଁ ପଡ଼ନ୍ତୁ ବୋଲି ଭାବିବି ।

ସିକତା ।। ମୁଁ ଅଭିନୟ କରୁଥିଲି ।

ସନ୍ତାପ ।। କେବେ ନୁହେଁ ।

ସିକତା ।। ମୁଁ ଅଭିନୟ କରୁଥିଲି ତମ ଭଉଣୀ ଲାଗି ।

ସନ୍ତାପ ।। ସିକତା !

ସିକତା ।। ମୁଁ ମଝିରେ ଥାଇ ଏଇ ପ୍ରେମ ଅଭିନୟଟା ନ କରିଥିଲେ ତମ ବର୍ଷା ଆଜି ଦିଲ୍ଲୀରେ ଥାଆନ୍ତା ! ଫୁଟ୍ ପାଥ୍‌ରେ ।

ସନ୍ତାପ ।। କିନ୍ତୁ ···ମୁଁ ତୁମକୁ ବିଶ୍ୱାସ କରିପାରୁନି !

ସିକତା ।। ମତେ ବିଶ୍ୱାସ କର ବୋଲି ମୁଁ ତମକୁ ଅନୁରୋଧ କରୁନି ।

ସନ୍ତାପ ।। ସିକତା !

ସିକତା ।। ଘର ଭିତରକୁ ଯାଅ, ବେଶୀ ମୁଣ୍ଡ ଖରାପ କରନି ।

ସନ୍ତାପ ।। କିନ୍ତୁ···

ସିକତା ।। ଆଜି କ'ଣ ସବୁ କୀର୍ତ୍ତି କରିଚ ?

ସନ୍ତାପ ।। ଆଜି ପାର୍ଟି ଅଫିସକୁ ଯାଇଥିଲି ।

ସିକତା ।। ହାତ ବୋମା ପାର୍ଟି ଅଫିସ ?

ସନ୍ତାପ ।। ଜେଲ ଯିବା ପୂର୍ବରୁ ଏଥିରୁ ଗୋଟାଏ ଦି'ଟାକୁ ମାରିବାକୁ ପଡ଼ିବ ।

ସିକତା ।। ଦାସ୍ କ୍ୟାପିଟାଲ୍ ପଢ଼ି କେତେ ଦିନ କମ୍ୟୁନିଷ୍ଟ ହେବ ?

ସନ୍ତାପ ।। ପୃଥିବୀରେ ସମସ୍ତେ ଯେତେ ଦିନ ଚହାଇଛନ୍ତି !

ସିକତା ।। ତୁମକୁ ଦେଖିଲେ ମୋର ମନେ ହେଉଚି, ତମେ ଯେମିତି ମୋର ଏକ ଅଝଟ ଛୁଆ !

ସନ୍ତାପ ।। କ'ଣ କହିଲ ?

ସିକତା ।। କିଛି ନାହିଁ, ତମେ ଭିତରକୁ ଚାଲ, ଚାଲ ।

ସନ୍ତାପ ।। ତମେ ଯାଅ ସିକତା, ମତେ ଏକଲା ରହିବାକୁ ଦିଅ ।

।। ଏକସ୍ତଶ ।।

ପିଙ୍କି ।। ହଜୁ ଏଇଠି ବସ, ମୁଁ ଲୁଚି ତରକାରୀ ଆଣି ଦେଉଛି ।

ସଂତାପ ।। ଲୁଚି... ?

ପିଙ୍କି ।। ସ୍ନିହିର ସାଉ କାଲୁ 'ରସଗୋଲାକୁ' ପଠେଇ ଦେଇ ।

ସଂତାପ ।। ରସଗୋଲା ?

ପିଙ୍କି ।। କେକ୍ ଦରକାର ?

ସଂତାପ ।। କେକ୍ ?

ପିଙ୍କି ।। ( ହସିଲା ) ଇସ୍ । ମୁଁ ମ୍ୟାଜିକ୍ ଦେଖେଇବି, ଆଜି ହଠାତ୍ କମିତ ରୂଟି, ଡାଲମା ରସଗୋଲା ଆଉ କେକ୍ ହୋଇଗଲା !!

[ ପିଙ୍କି ଗଲାପରେ ସଂତାପ ଭାବନ୍ତି ସମସ୍ତ ଚିନ୍ତାଗ୍ରସ୍ତ ହେଲା ଭଳି ଜଣାଗଲା । ଆବଦ୍ଧ ସଂଗୀତ ରୂପେ ଏକ କୋମଳ ଶାନ୍ତ ମୂର୍ଚ୍ଛନା ଦିଆ ଯାଇପାରେ । ଉଦାହରଣ ସ୍ୱରୂପ ଅରବିନ୍ଦଙ୍କ ପ୍ରାର୍ଥନା ସଂଗୀତ କିମ୍ବା ପ୍ରଭାତସ୍ଥା ଅଲଗା ହେଲା । ସଂତାପ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେ । ଏତିକି ବେଳେ ବର୍ଷା ଏକ ବଡ଼ ଟ୍ରେରେ ବିଭିନ୍ନ ପ୍ରକାର ଖାଦ୍ୟ ନେଇ ଆସି ପହଞ୍ଚି 'ଟି ପଏ' ଉପରେ ରଖିଛି । ]

ସଂତାପ ।। ବର୍ଷା !

ବର୍ଷା ।। ( ଚାହୁଁଛି )

ସଂତାପ ।। ଏଇଠି ପ୍ରହସନ ଲଗେଇଛ ?

ବର୍ଷା ।। ପ୍ରହସନ ?

ସଂତାପ ।। ଆଜି କୋଉଥି ପାଇଁ ଏତେ ସବୁ ନବରଙ୍ଗ ହେଇଛି ?

ବର୍ଷା ।। ଆଜି ମୋର ଜନ୍ମ ଦିନ ।

ସଂତାପ ।। ସଟ୍ ଅପ୍ !

ବର୍ଷା ।। ଭାଇ !

ସଂତାପ ।। କେବେଠୁ ତୋର ଜନ୍ମ ଦିନଟା ମାର୍ଚ୍ଚ ମାସରେ ହେଲା ।

ବର୍ଷା ।। ଏଇଟା ମିଛ ମିଛ ଜନ୍ମଦିନ ।

।। ବାସ୍ତୁସ୍ତ ।।

ସଂତାପ ।। ମିଛ ମିଛ ?

ବର୍ଷା ।। ହଁ, ପ୍ରେଜେଂଟେଶନ ପାଇବା ପାଇଁ ଏଇଟା ଏକ ସୁଗମ ଉପାୟ ।

ସଂତାପ ।। କିଏ ପ୍ରେଜେଂଟେଶନ୍ ଦେବ ? କାହିଁକି ଦେବ ?

ବର୍ଷା ।। ସେଇଟା ମୋର ବୁଝିବା କଥା, ତମର ନୁହେଁ ।

ସଂତାପ ।। ବର୍ଷା !

ବର୍ଷା ।। ଭାଇ ଘର କେମିତି ଚଳୁଛି, କୋଉଠୁ ପଇସା ଆସୁଛି ଏ ସବୁ ବୁଝିବା ଅବସ୍ଥା ତମର ନାହିଁ । ( ଶେଷ ଆଡ଼କୁ କଂଠ ଆର୍ଦ୍ର ହୋଇ ଆସୁଥିଲା )

ସଂତାପ ।। କ'ଣ ମୋର ଗୁଳୁଗୁଣ୍ଠା ଚାଲି ଯାଇଚି ବୋଲି ?

ବର୍ଷା ।। ଯଦି ସେଇଆ ହୁଏ !

ସଂତାପ ।। ମୁହଁ ସଂଭାଳି କଥାବାର୍ତ୍ତା କର ।

ବର୍ଷା ।। ଓ ! ବଡଭାଇ ବୋଲି ଅଭିଭାବକ ହଉଚ ?

ସଂତାପ ।। ମୁଁ ଜାଣେ ଏ ପ୍ରେଜେଂଟେଶନ୍ କୁଆଡୁ ଆସୁଚି ! କାହିଁକି ଆସୁଛି ?

ବର୍ଷା ।। ଜାଣିଚ ତ ପଚାରୁଛ କାହିଁକି ?

ସଂତାପ ।। ତୋ ପିଠିରୁ ଛାଲି ଉତାରି ପିଟିବା ପାଇଁ ଇଚ୍ଛା ହେଉଛି ।

ବର୍ଷା ।। ସେଇଟା ଯଦି ଦ'ବର୍ଷ ଆଗରୁ କରି ପାରିଥାଆନ୍ତ !

ସଂତାପ ।। ମୋ'ର ତୋ' ଉପରେ ବିଶ୍ୱାସ ଥିଲା ।

ବର୍ଷା ।। ବଞ୍ଚିବା ପାଇଁ ବିଶ୍ୱାସର ପ୍ରୟୋଜନ ନାହିଁ, ଅନ୍ତତଃ ଏଇ ଶତାବ୍ଦୀରେ...

ସଂତାପ ।। ତୋ' ଲାଗି ମୁଁ ରାସ୍ତାରେ ମୁଣ୍ଡ ଉଠେଇ ଚାଲି ପାରୁନି ।

ବର୍ଷା ।। ମୁଁ ଯଦି କହେ ମୁଁ ତମ ଲାଗି ଅପମାନିତ ହେଉଛି !

ସଂତାପ ।। ବର୍ଷା !

ବର୍ଷା ।। ତମର ଗୁଳୁଗୁଣ୍ଠା ଯାଇଚି, ତମେ ଦଳେ ଲୋଫରଙ୍କ ସାଥିରେ କୁଆଡ଼େ ବୋମା ତିଆରି କରୁଚ...କମ୍ୟୁନିଷ୍ଟ ହେଉଚ...

।। ଭୈରବୀ ।।

ସନ୍ତାପ ।। କମ୍ୟୁନିଷ୍ଟ ହେବାଟା କ'ଣ ଅପରାଧ ?

ବର୍ଷା ।। ଲୋକେ କହୁଛନ୍ତି ।

ସନ୍ତାପ ।। ଲୋକେ ତୋ ସମ୍ପର୍କରେ ଅନେକ କଥା କହୁଛନ୍ତି ।

ବର୍ଷା ।। ମୁଁ ଜାଣେ ।

ସନ୍ତାପ ।। ନା, ମୁଁ ତୋର ଏଇ ସ୍ୱେଚ୍ଛାଚାରିତା କେବେ ବରଦାସ୍ତ କରି ପାରିବିନି ।

ବର୍ଷା ।। କାହିଁକି ? ମତେ ତମେ ଭଲ ଘରେ ବାହା ଦେଇ ପାରିବ ?

ସନ୍ତାପ ।। ସେ ଦାୟିତ୍ୱ ମୋର ଅଛି ।

ବର୍ଷା ।। ସେ ଦାୟିତ୍ୱ ତମର ନାହିଁ ।

ସନ୍ତାପ ।। ମୁଁ ତତେ ପିଲାଦିନେ କାଖେଇଚି…ତତେ ଏଇ ହାତରେ…

ବର୍ଷା ।। ମୋ' ଉପରେ ବୟସର ବୋଝଟା ନଦ୍ଧ ଦେଇ ତମେ ଭାବିଚ ଭାଇ ମତେ ଶାସନ କରିବ ?

ସନ୍ତାପ ।। ବର୍ଷା ! ତୁ ଏ ଭିତରେ ଅନେକ ବଦଳି ଯାଇଚୁ ।

ବର୍ଷା ।। ତମେ ମତେ ବଦଳେଇଚ, ଭାଇ ବଦଳେଇଚ, ଏ ଘର ବଦଳେଇଚ ।

ସନ୍ତାପ ।। ନିଜେ ଦୋଷ କରି ସମସ୍ତଙ୍କୁ କାହିଁକି ଦୋଷୀ କରୁଚୁ ?

ବର୍ଷା ।। ଏଇଠି କିଏ ଦୋଷୀ ନୁହନ୍ତି, କେହି ନିର୍ଦ୍ଦୋଷ ବି ନୁହନ୍ତି ।

ସନ୍ତାପ ।। କିନ୍ତୁ ତୋର ଏଇ ପରିବର୍ତ୍ତନ ?

ବର୍ଷା ।। ପରିବର୍ତ୍ତନ ?

ସନ୍ତାପ ।। ମୁଁ ଭାଉଜଠୁ ସବୁ ଶୁଣିଛି ।

ବର୍ଷା ।। ସେଇ ଖବରଟା କେବଳ ଆମ ଭିତରେ ସୀମାବଦ୍ଧ ।

ସନ୍ତାପ ।। ଓଃ ! ବର୍ଷା !

ବର୍ଷା ।। ଦେଖ ଭାଇ ତମେ ମିଛଟାରେ ବ୍ୟସ୍ତ ହେଇ ପଡ଼ୁଚ । ମୋର କୌଣସି ପରିବର୍ତ୍ତନ ହେଇନି । ସେମିତି ଦି'ଟା ଗୋଡ଼, ଦି'ଟା ହାତ, ଦି'ଟା ଆଖି…

।। ଚବୁସ୍ତଶ ।।

ସନ୍ତାପ ।। କିନ୍ତୁ କ'ଣ ଦରକାର ଥିଲା ? ତୁ ପ୍ରେମଦାଉଙ୍କୁ ସେ ସୁଯୋଗ ଦେଲୁ କାହିଁକି ?

ବର୍ଷା ।। ତମେ ତ ପୁଣି ଲଭ୍ ମ୍ୟାରେଜ୍ କରିଚ ?

ସନ୍ତାପ ।। ( ଅନ୍ୟ ମନସ୍କ ) ଏଁ ! ହଁ, କ'ଣ ହେଲା ?

ବର୍ଷା ।। ତମର କିଛି କ୍ଷତି ହେବନି । ମୁଁ ପ୍ରେମଦାଉଙ୍କୁ ବିବାହ କରିବି ।

ସନ୍ତାପ ।। ସେ ଯଦି ରାଜି ନ ହୁଏ ?

ବର୍ଷା ।। ଆଇ ଓ୍ୱିଲ୍ ଟେକ୍ ମାଇଁ ଓନ୍ ଚାନ୍ସ୍ !

ସନ୍ତାପ ।। (ଚିତ୍କାର କରି) ବର୍ଷା ! ତୁ ମୋ'ର...

ବର୍ଷା ।। ମୁଁ ପ୍ରସ୍ତୁତ । ଗରିବ ଘରେ ଜନ୍ମ ହେବା ପ୍ରଥମ ଅପରାଧ । ଦ୍ୱିତୀୟ ଅପରାଧ ବଡ଼ ହେବା ପାଇଁ ସ୍ୱପ୍ନ ଦେଖିବା ।

ସନ୍ତାପ ।। କିନ୍ତୁ ଏମିତି ସ୍ୱପ୍ନ ଦେଖିବାର ତୋର କ'ଣ ଦରକାର ଥିଲା ?

ବର୍ଷା ।। ସମସ୍ତେ ଚାହାନ୍ତି ଟିକିଏ ଭଲରେ ରହିବା ପାଇଁ । ସମସ୍ତେ ଖୋଜନ୍ତି ଟିକିଏ ନୂଆ ଅନୁଭୂତି...

ସନ୍ତାପ ।। ଓଃ ! ଷ୍ଟପ୍ ଇଟ୍ । ତୁ ଯା' ବର୍ଷା... ପ୍ଲିଜ୍ !

ବର୍ଷା ।। ଯାଉଛି । ତମେ କିନ୍ତୁ ସେତିକି ଖାଇଦିଅ ।

ସନ୍ତାପ ।। ଦେହ ବିକ୍ରି କରି ଯୋଉ ପଇସା ଅଣାଯାଏ । ସେଥିରେ ସନ୍ତାପ ମହାନ୍ତି ରସଗୋଲା ଖାଇପାରିବନି ।

ବର୍ଷା ।। ( ରାଗରେ ଜଳି ଉଠି ) ଭାଇ !

ସନ୍ତାପ ।। ( ଚିତ୍କାର କରି ) ଗେଟ୍ ଆଉଟ୍ !

[ ଭିତରୁ ଆସିଛି ସମ୍ବିତ୍ ]

ସଂବିତ୍ ।। କ'ଣ ହେଲା ଭାଇ ?

ବର୍ଷା ।। ମୁଁ ଦେହ ବିକ୍ରୀ କରି କୁଆଡ଼େ ଟଙ୍କା ଆଣୁଚି !

[ କାନ୍ଦି କାନ୍ଦି ଚାଲି ଯାଇଚି ]

ସଂବିତ୍ ।। ଆଜି ବର୍ଷାର ଜନ୍ମଦିନ । ଜନ୍ମଦିନଟାରେ ତମେ ତାକୁ କନ୍ଦେଇଲ ?

।। ପଞ୍ଚଦୃଶ୍ୟ ।।

ସତାପ ॥ ଜନ୍ମଦାନ ? ପ୍ରେଟିଜଣ୍ଟେଶନ୍ ଅଣିବା ଜନ୍ମଦାନ ?

ସବତ୍ ॥ ସବୁ ଉତ୍ସବ ଏକ ଏକ ବିଶ୍ୱାସ - ମାନିପାରିଲେ ଏଇଟା ବି ଜନ୍ମଦାନ !

ସତାପ ॥ କେତେ ଖଣ୍ଡି ଶାଢ଼ୀ ବ୍ଲାଉଜ୍ ପାଇଲ ?

ସଂବତ୍ ॥ ଦଶ ଖଣ୍ଡି ଶାଢ଼ୀ ଛାଡ଼ିଦେଇ ଅନ୍ତତଃ ପାଞ୍ଚଶହ ଟଙ୍କାର ଜିନିଷ ।

ସତାପ ॥ ଏଣିକି ଏ ଘରେ ଖଣ୍ଡେ ସାଇନ୍ବୋର୍ଡ ଝୁଲେଇ ଦିଅ ।

ସଂବତ୍ ॥ ଖାଇ !

ସତାପ ॥ ତୁ' ତା' ପାଇଁ ଯୁକ୍ତି କରିବାକୁ ଆସିଲୁ ?

ସଂବତ୍ ॥ ତମେ ଏଣିକି ଏମିତି ରେକ୍ ଠୋକ୍ ଜବାବ୍ ଦେବା ଛାଡ଼ ।

ସତାପ ॥ ସଂବତ୍ ତୁ ମତେ ଉପଦେଶ ଦେଉଛୁ !

ସଂବତ୍ ॥ ତମେ ବର୍ଷାକୁ କାହିଁକି ଏମିତି କହିଲ ?

ସଂତାପ ॥ ସେ ଅଧିକାର ଅଛି ବୋଲି !

ସଂବତ୍ ॥ ନା, ଏଇ ନୀତି, ଆଦର୍ଶ ଓ ଚରିତ୍ରର ମୁଖା ପିନ୍ଧି—ତମେ ଏ ଘରେ କଥାବାର୍ତ୍ତା କରି ପାରିବ ନାହିଁ ।

ସଂତାପ ॥ କାହିଁକି ? ସେ ବୁଢ଼ା କ'ଣ ଏଘରୁ ଉଠିଗଲା ?

ସଂବତ୍ ॥ ଅନେକ ଦିନରୁ ଉଠିଗଲାଣି—ଯୋଉ ଦିନଠୁ ତମେ ବାପାଙ୍କୁ ସେଇ ପଛଘରଟା ଛାଡ଼ି ଦେଇଚ —

ସଂତାପ ॥ ବାପା ସେଇଠି ରହିବାପାଇଁ ଚାହିଁଥିଲେ ।

ସଂବତ୍ ॥ ତମେ ଆଉ ଖାଉଜ ଚାହିଁଥିଲ ।

ସଂତାପ ॥ ସଂବତ୍ !

ସଂବତ୍ ॥ ଲାଲ ଆଖି କାହାକୁ ଦେଖଉଚ ?

ସଂତାପ ॥ କ'ଣ ଏ ଘରେ ମୋର କିଛି କହିବାର ଅଧିକାର ନାହିଁ ?

ସଂବତ୍ ॥ କିଛି ନାହିଁ । କ'ଣ ହେଇଗଲା ସେଇଠୁ ?

ସଂତାପ ॥ ତୁ ହିପ୍ପୀ ହେଇଗଲୁ ।

॥ ଛଅସୁଷ ॥

ସଂବିତ୍ ॥ ମୁଁ ତ ଗଞ୍ଜେଇ ଖାଉନି !

ସଂତାପ ॥ ବର୍ଗର ଅଧୋପତନ ପାଇଁ ତୁ ଦାୟୀ ।

ସଂବିତ୍ ॥ ସେଇଟାକୁ ତମେ ଅଧୋପତନ କହୁଚ । ଅକାରଣରେ ।

ସଂତାପ ॥ ଅକାରଣରେ ନୁହେଁ । ତମ ସମାଜ କହୁଚି ।

ସଂବିତ୍ ॥ ଡ୍ୟାମ୍ ସ୍ନୋବ୍ ସୋସାଇଟୀ !

ସଂତାପ ॥ ସେଇଥିପାଇଁ ହିପ୍ପୀ ହେଇଗଲୁ ବୋଲି କହୁଥିଲି ।

ସଂବିତ୍ ॥ ତମ ଭଳି ବହି ପଢି ମୁଁ ପଣ୍ଡିତ ହେଇନି କି ଫିଲସଫି ବହି ଘୋଷିନି ।

ସଂତାପ ॥ ସେଇଟା ତୋ' ଜୀବନର ସବୁଠୁ ବଡ ଭୁଲ୍ ।

ସଂବିତ୍ ॥ କ'ଣ ବହି ଘୋଷି, କପି କରି ପାଶ୍ କରି ପାରିଲିନି ବୋଲି ?

ସଂତାପ ॥ ଖୁବ୍ ହାଲୁକା ଭାବରେ କଥାଟାକୁ କହି ପାରୁଚୁ ତ ?

ସଂବିତ୍ ॥ ଦେଢଶ ବର୍ଷ ତଳେ ମାକାଲେ ସାହେବ ଯୋଉ ପାଠ ତିଆରି କରି ମରିଗଲା, ସେଇ ପଦ୍ଧତିଟା ଦର୍ଶନ ପଢିବା ପାଇଁ ମୋର ଆଗ୍ରହ ନାହିଁ ।

ସଂତାପ ॥ ଖାଲି ବମ୍ବେ ଯିବାର ଆଗ୍ରହ ଅଛି ? ରାସକେଲ୍ !

ସଂବିତ୍ ॥ ତମେ କେମିତି ବହି ପଢି ପଢି କମ୍ୟୁନିଷ୍ଟ ହେଇଗଲ ?

ସଂତାପ ॥ ତୋର ମନେ ରଖିବା ଉଚିତ, ମୁଁ ଏକଦା ଛାତ୍ର ନେତା ଥିଲି ।

ସଂବିତ୍ ॥ ସେତିକିବେଳେ ଗୋଟାଏ ଗ୍ୟାଙ୍ଗ୍ ଧରି ପୋଲିସ୍ ଭ୍ୟାନ୍ ପୋଡ଼ିବା ତମର କାମ ଥିଲା ।

ସଂତାପ ॥ ଏ ଦେଶ ପାଇଁ ବିପ୍ଳବ ଦରକାର ।

ସଂବିତ୍ ॥ ତମେ ମାନେ ରୋମାଣ୍ଟିକ୍ ବିପ୍ଳବୀ । ବକ୍ସି ଜଗବନ୍ଧୁଙ୍କ ଭଳି ଏ ଜାତିର ଇତିହାସରେ ଗୋଟିଏ ଗୋଟିଏ କଳଙ୍କ । ତମ ଦେଇ ବିପ୍ଳବ ଆସିବନି ।

ସଂତାପ ॥ କ'ଣ ନିଜ ମହତ ଛାଡ଼ିଦେଇ ଦାଣ୍ଡ ମଝିରେ ଲଙ୍ଗଳା ହେଇ ଡେଇଁଲେ ବିପ୍ଳବ ହେବ ?

॥ ଶତଘ୍ନୀ ॥

ସଂବିତ୍ ।। ଅଲବତ୍ ହେବ । ପ୍ରଥମେ ନିଜେ ବିପ୍ଳବୀ ହୁଅ, ଘର ଭିତରେ ବିପ୍ଳବ କର ।

ସଂତାପ ।। ବୋଧହୁଏ ସେଇ ବିପ୍ଳବ ବର୍ଷାକୁ ନେଇ ତୁ ଆରମ୍ଭ କରିଛୁ ?

ସଂବିତ୍ ।। ମୁଁ ବିପ୍ଳବ କରିବାକୁ ଚାହେଁନା । ବିଶେଷ କରି ତମର ଏଇ ଫେସନବଲ୍ ଭାଇଓଲେନ୍ସକୁ ମୁଁ ଘୃଣା କରେ ।

ସଂତାପ ।। ମୋ' ବିପ୍ଳବ ପ୍ରୋଲେଟାରିଏଟ୍‌ର ବୁର୍ଜୁଆ ବିରୁଦ୍ଧରେ ବିପ୍ଳବ ନୁହେଁ, କ୍ରୀତଦାସର ମାଲିକ ବିରୁଦ୍ଧରେ ବିପ୍ଳବ ନୁହେ, ଏହା ଜୀବନ ବିରୁଦ୍ଧରେ, ଏ ସୃଷ୍ଟି ବିପକ୍ଷରେ ଏକ ବିପ୍ଳବ ।

ସଂବିତ୍ ।। ତମେ ଯଦି ବିପ୍ଳବରେ ବିଶ୍ୱାସ କରୁଚ, ନିଶ୍ଚୟ ଏକ ନିର୍ଦ୍ଧାରିତ ମୂଲ୍ୟବୋଧରେ ବିଶ୍ୱାସ କରୁଥିବ ?

ସଂତାପ ।। ନିଶ୍ଚୟ ।

ସଂବିତ୍ ।। ସେଇ ମୂଲ୍ୟବୋଧଟା ଏତେ ନୀଚ ? ଏତେ ନୀଚ ଯେ ତମେ ବର୍ଷାକୁ କହି ପାରିଲ ଦେହ ବିକ୍ରୀ କରୁଚ ବୋଲି ?

ସଂତାପ ।। ଏଇ କଥାଟାକୁ ବୁଲେଇ କହିଥିଲେ ଭଲ ଶୁଭିଥାଆନ୍ତା । କିନ୍ତୁ ସିଧା କହିବା ମୋର ଅଭ୍ୟାସ । ହିପୋକ୍ରିସି ନୁହେ ।

ସଂବିତ୍ ।। ତମେ ଫ୍ରଷ୍ଟ୍ରେଟେଡ୍ । ମୁଣ୍ଡ ଖରାପ କରିଚ ଏ ପର୍ଯ୍ୟନ୍ତ ଗୋଟାଏ ଆଦର୍ଶ ପଛରେ ଗୋଡ଼େଇ ଗୋଡ଼େଇ । ସେଇଥି ପାଇଁ ତମକୁ ଏ ସବୁ ଖରାପ ଲାଗୁଛି—ଆହୁରି ପ୍ରଶସ୍ତ ହେଇଯାଅ—ମୋ' ଭଳି — । ଦେଖିବ ସବୁ ରଙ୍ଗହୀନ, ସ୍ୱାଦୁହୀନ, ପରିଚୟହୀନ ।

ସଂତାପ ।। ( ଭିତରକୁ ଯାଉ ଯାଉ ) ଓଃ ! ମୋ' ମୁଣ୍ଡଟା ଭୀଷଣ ବିନ୍ଧୁଛି ।

ସଂବିତ୍ ।। କିନ୍ତୁ ଏ ଗୁଡ଼ା ଏଇଠି ରହିଲା ଯେ !

ସଂତାପ ।। ମୁଁ ଖାଇବିନି । ( ଚାଲିଗଲେ ଭିତରକୁ )

ସଂବିତ୍ ।। ହୁଁଃ !!

।। ଅଠସ୍ତଷ୍ମ ।।

[ ବସିଯାଇ ଖଣ୍ଡେ ମାଗାଜିନ୍ ପଢ଼ିଲା ।
ସମ୍ଭବତଃ ପ୍ଲେ - ବୟ୍ । କାରଣ
ମଲାଟ ପୃଷ୍ଠାର ଦିଶୁଥିବା ନଗ୍ନ ଛବିଟା
ବାହାରକୁ ଦିଶୁଥିଲା । ଭିତରୁ
ପ୍ରବେଶ କଲେ ସୀତାନାଥ ]

ସୀତାନାଥ ।। ସଂବିତ୍ !

ସଂବିତ୍ ।। କ'ଣ ହେଲା ? ତମେ କାହିଁକି ଏ ଘରକୁ ଆସିଲ ?

ସୀତାନାଥ ।। ଅନେକ ଦିନ ହେଲା ଆସି ନଥିଲି ।

ସଂବିତ୍ ।। ସେଇଥିପାଇଁ ଚାଲି ଆସିଲ ? ଏ ଘରେ ଆଖିବୁଜି ରହିବାକୁ ହୁଏ ।

ସୀତାନାଥ ।। ଆଚ୍ଛା···ରୁ···ପାଠ ପଢ଼ୁଚୁ ?

ସଂବିତ୍ ।। ହଁ ।

ସୀତାନାଥ ।। ( ଖୁସି ହୋଇ ) ଭଗବାନ ତତେ ସୁବୁଦ୍ଧି ଦିଅନ୍ତୁ !

ସଂବିତ୍ ।। ଖାଇ ସାରିଲଣି ?

ସୀତାନାଥ ।। ନା, ସେମାନେ ଖାଉଛନ୍ତି ।

ସଂବିତ୍ ।। ଏଇଠି ଖାଇ ଦିଅନା, ବଢ଼ା ହୋଇଚି ।

ସୀତାନାଥ ।। ( ଡରିଯାଇ ) ଏ ଗୁଡ଼ା ମୋ' ପାଇଁ ?

ସଂବିତ୍ ।। ତମେ କ'ଣ ପର କି ? ତମେ ମୋର ବାପା !

ସୀତାନାଥ ।। ମୁଁ ତା'ହେଲେ ଖାଉଚି ··· ( ଖାଇବା ଆରମ୍ଭ କଲେ )

ସଂବିତ୍ ।। ବଢ଼ିଆ ହୋଇଚି ?

ସୀତାନାଥ ।। ବଢ଼ିଆ, ଆଚ୍ଛା ସଂବିତ୍···

ସଂବିତ୍ ।। ହୁଁ — ( ପଢ଼ୁଥିଲା )

ସୀତାନାଥ ।। ବର୍ଷା କାହିଁକି କାନ୍ଦୁଥିଲା ?

ସଂବିତ୍ ।। ତାର ଆଜି ଜନ୍ମଦିନ ବୋଲି ।

ସୀତାନାଥ ।। ବର୍ଷାର···ଆଜି···ଜନ୍ମଦିନ ?

।। ଅଣଅଶି ।।

ସବୁତ୍ ॥ ହଉ — ହେଲ ଏବେ ମିଛ ମିଛ । ଝିଅ କ'ଣ ?
ସୀତାନାଥ ॥ କହୁ ସିଏ ଯେମିତ କାନ୍ଦୁଥିଲ...
ସବୁତ୍ ॥ ଛୁଆଟା ... ପିଲ୍ଦିନରୁ ତାର କାନ୍ଦିବା ଅଭ୍ୟାସ, କାନ୍ଦୁଣି ପିଲଟେ !
ସୀତାନାଥ ॥ ( ଖାଇବାକୁ ଲଗିଲେ । କିଛି ସମୟ ନୀରବତା )
ସବୁତ୍ ॥ ବାପା !
ସୀତାନାଥ ॥ ହୁଁ ।
ସବୁତ୍ ॥ ହେ - ହେ - ହେ - ହେ...ରସଗୋଲାଟା ବଢ଼ିଆ ହେଇଚ ?
ସୀତାନାଥ ॥ ବଢ଼ିଆ ।

[ କିଛି ସମୟ ଗଲପରେ ]

ସବୁତ୍ ॥ ହୁ - ହୁ - ହୁ - ହୁ - ହୁ ...
ସୀତାନାଥ ॥ କ'ଣ ହେଇଚ ?
ସବୁତ୍ ॥ ହୁ - ହୁ - ହୁ - ହୁ ...
ସୀତାନାଥ ॥ କରେ କାହିଁକି ହସୁଚୁ ?
ସବୁତ୍ ॥ ବାପା - ହୁ - ହୁ - ହୁ
ସୀତାନାଥ ॥ କ'ଣ ହେଲ ?
ସବୁତ୍ ॥ ଏ ବହିଟା ... ହୁ - ହୁ - ହୁ
ସୀତାନାଥ ॥ କ'ଣ ହେଲ ବହିଟା ?
ସବୁତ୍ ॥ ଝିଅଟେ ନଙ୍ଗଳା ହେଇଚ ।
ସୀତାନାଥ ॥ ( ରାଗି ଯାଇ ) କ'ଣ କହୁଲୁ ?
ସବୁତ୍ ॥ ଦେଖ ବାପା, ଫଟୋରେ ସେ ଝିଅଟା କେମିତି...
ସୀତାନାଥ ॥ ବଦ୍‌ମାସ !
ସବୁତ୍ ॥ ( ଫଟୋ ଧରି ଆଗେଇଯାଇ ) ଦେଖନ୍ତୁ, ମୁଁ କ'ଣ ମିଛ କହୁଚ ?
ସୀତାନାଥ ॥ ଅଭଦ୍ର ! ଅସଭ୍ୟ ! ମତେ ସେ ଫଟୋ ଦେଖଉଚୁ ?

॥ ଅସି ॥

ସଂବତ୍ ।। ତମେ ତ ଶୁଣୁନ ବାପା ··· ଦେଖୁନ ପ୍ରଥମେ ··· ଏଇଟା କୁଆଡ଼େ ମଡେ଼ଲ ଗାର୍ଲ !

ସୀତାନାଥ ।। ବଦମାସ୍ ! ବାଳୁଙ୍ଗା ! ( ପାଖରେ ଥିବା ହାତ ବାଡ଼ି ଖଣ୍ଡିକ ଉଠେଇଲେ ପିଟିବା ପାଇଁ )

ସଂବତ୍ ।। ବାପା, ମତେ ପିଟିବ ? ( ପୁଣିଥରେ ଫଟୋ ଦେଖେଇଚ )

ସୀତାନାଥ ।। ପିଟିବିନି ? ଖୁବ୍ ବଡ଼ ହୋଇଗଲୁ ବୋଲି ?

ସଂବତ୍ ।। ଏମିତି ଆଜି କାଲି ଚଳୁଚି ( ସୋଫା ଚାରିପଟେ ବୁଲିବାକୁ ଲାଗିଲା )

ସୀତାନାଥ ।। ( ତାକୁ ଗୋଡ଼ାଉ ଗୋଡାଉ ) କ’ଣ କହିଲୁ ? ଚଳୁଚି ?

ସଂବତ୍ ।। ହାଃ ··· ହାଃ ... କାଇଁ, ମାରିଲେ ଦେଖି !

ସୀତାନାଥ ।। ବଦ୍‌ମାସ ଟୁଆର ବହ୍ୱପ ଦେଖ ! ଚଣ୍ଡାଳ !

ସଂବତ୍ ।। ( ସୋଫାର ଅନ୍ୟପଟେ ଥାଇ ) ହେଃ ··· ହେଃ ···

ସୀତାନାଥ ।। ଥଟ୍ଟା କରୁଚୁ ମତେ ? ଦଉଚି ପାହାରେ !!

ସଂବତ୍ ।। ତମେ ମାରିପାରିବନି । ଅଭ୍ୟାସ ଛାଡ଼ି ଗଲଣି —

ସୀତାନାଥ ।। ( ମାରିବା ପାଇଁ ଯାଉ ଯାଉ ) ବଦନେ ଚାଲି ଆସିଲା ବୋଲି ଏ ଆଗଘରଟାକୁ, ତୁ ନଦେଖେଇ ନଦେଖେଇ ଏଇ ଛବିଟା ଦେଖୁଚ ?

ସଂବତ୍ ।। ବାପା, ତମେ ମତେ ମାରିବା ଉଚିତ୍ ହେବନି । ମୁଁ ବଡ଼ ହେଇ ଗଲିଣି ।

ସୀତାନାଥ ।। ( ବାଡ଼ିଟା ଉଠେଇଛନ୍ତି ମାରିବା ପାଇଁ ଏବଂ ସଂବତ୍ ତାକୁ ଧରି ପକାଉ ପକାଉ ) ମୋ ସାଙ୍ଗରେ ଯୁଦ୍ଧ କରୁଛୁ ?

ସଂବତ୍ ।। ତମେ ମତେ ମାରିବାକୁ ଗୋଡଉଚ ଯେ ?

ସୀତାନାଥ ।। ବଦ୍‌ମାସ୍ !! ( ପିଟିଲେ ପାହାରେ, ବାଡ଼ିଟା କିନ୍ତୁ ସୋଫା ଉପରେ ବାଜିଲା । ଅଥଚ ସଂବତ୍ ଚିତ୍ ହୋଇ ପଡ଼ିଗଲା )

ସଂବତ୍ ।। ଓଃ !

।। ଏକାଅଶି ।।

ସୀତାନାଥ ॥ ଠିକ ହେଇଛ ।

ସମ୍ବିତ୍ ॥ ଆଃ !!

ସୀତାନାଥ ॥ ଯାଃ ! ମୁଣ୍ଡ ଫାଟୁ । ମର ନ ହେଲେ !

ସମ୍ବିତ୍ ॥ ଇଃ !

ସୀତାନାଥ ॥ ( ପାଖକୁ ଯାଇ ) କ’ଣ ହେଲା ତୋର ?

ସମ୍ବିତ୍ ॥ ମୁଁ ମରିଯିବି ···

ସୀତାନାଥ ॥ ( ବସି ଯାଇ ) ନା, ମୋ’ ଧନଟାର କ’ଣ ହେଲା !

ସମ୍ବିତ୍ ॥ ମୁଁ ଆଉ ବଂଚିବିନି ।

ସୀତାନାଥ ॥ ( କାନ୍ଦ କାନ୍ଦ ହୋଇ ) ତୋର କିଛି ହେଇନି ! ତୁ ଉଠ୍ ବାପା !

ସମ୍ବିତ୍ ॥ ମୁଁ ··· ମୋର ··· ମୋର କିଛି ହେଇନି ?

ସୀତାନାଥ ॥ ମୁଁ ଚଣ୍ଡାଳ କାହିଁକି ପିଟିଲି ··· ବର୍ତ୍ତମାନ କଣ କରିଯିବି ।

ସଂବିତ୍ ॥ ହତ୍ୟା ! ପୁତ୍ର ହତ୍ୟା !!

ସୀତାନାଥ ॥ ନା । ମୁଁ ଏତେ ବଡ଼ ପାପ କରିବିନି । ମୁଁ କେବେ ଚାହିଁ ନଥିଲି ତୁ ମରି ଯା ବୋଲି !

ସମ୍ବିତ୍ ॥ କିନ୍ତୁ ମୁଁ ମରି ଯାଉଛି, ଆଉ କେବେ ବଞ୍ଚିବିନି ।

ସୀତାନାଥ ॥ ତୁ’ ଉଠ ବାପା । ତୁ ମୋର ଗଣ୍ଠି ଧନ ··· ଅଳିଅଳ ପୁଅ ।

ସମ୍ବିତ୍ ॥ ତମ ଅଳିଅଳ ପୁଅ ମରିଗଲାଣି ।

ସୀତାନାଥ ॥ ପିଲାଦିନେ ତତେ କେତେ କାଖେଇ ବୁଲେଇଛି !

ସମ୍ବିତ୍ ॥ ଆଃ ! ଭୀଷଣ କଷ୍ଟ !

ସୀତାନାଥ ॥ କାନରେ ଗୋଟେ ଫାଶିଆ ପିନ୍ଧିଥାଉ ତୁ କାନ୍ଧ ଉପରେ ବସେଇ ତତେ ମୁଁ ବୁଢ଼ା ଆଉ ରଥଯାତ୍ରା ଦେଖେଇ ନେଉଥିଲି ।

ସଂବିତ୍ ॥ ମୁଁ ମରିଯିବି ···

॥ ଦ୍ୟାଅସି ॥

ସୀତାନାଥ ॥ ତୋ' ପାଇଁ ବୁଢାଆଲଡ଼ୁ ଆଜି ବୁଝ ଚଣା ବାଣେଇ ଦେଉଥିଲି···

ସଂବତ୍ ॥ ଓଃ ! ଯମରାଜ, ମତେ ଜଲ୍‌ଦି ନେଇଯାଅ —

ସୀତାନାଥ ॥ ପିଲାଦିନେ ତୁ ଗାଁ ପୋଖରୀରେ ବୁଡ଼ି ଯାଉଥିଲୁ ବୋଲି ଠାକୁରାଣୀଙ୍କ ପାଖରେ ବୋଦା ବଳି ଦେଇଥିଲି ···

ସଂବତ୍ ॥ ଓଃ ! ଭୀଷଣ କଷ୍ଟ !

ସୀତାନାଥ ॥ ତୁ ଉଠ ବାପା ··· ଆଉ କେବେ ମାରିବିନି ···

ସଂବତ୍ ॥ ଅଃ ··· ତମେ ଉଠ ··· ( ବିରକ୍ତ ଓ କଷ୍ଟ )

ସୀତାନାଥ ॥ ହେ ଭଗବାନ୍ ! ଏ ବୁଢା କାଳେ ଏ ଲୋକନିନ୍ଦା !

ସଂବତ୍ ॥ ମନୁଷ୍ୟଗଣ, ମୋ ପାଖରେ କେହି ରୁହ ନାହିଁ ।

ସୀତାନାଥ ॥ ( ପ୍ରାୟ କାନ୍ଦ କାନ୍ଦ ) ସଂବତ୍ ! ବାପା !!

ସଂବତ୍ ॥ ( ଖୁବ୍ ଜୋର୍‌ରେ ହସିଛି ଏବଂ ଉଠିପଡ଼ି ) ହାଃ ··· ହାଃ ··· ଦେଖିଲ ? କେମିତି ଡ଼ରେଇ ଦେଲି ?

ସୀତାନାଥ ॥ ( ରାଗିଗଲେ ) ବାଳୁଙ୍ଗା !

ସଂବତ୍ ॥ ମୃତ ସୈନିକ ରୋଲ୍‌ଟା କେମିତି ପରଫେକ୍ଟ କଲି, ଦେଖିଲ ବାପା ? ବମ୍ବେ ଯିବିଟି !

ସୀତାନାଥ ॥ ତୋ' ଗୋଡ ଭାଙ୍ଗି ଦେବିନି ? ( ଖଟେଇ ହେଲା ଭଳି ) ବମ୍ବେ ଯିବ !

ସଂବତ୍ ॥ ତମେ ସତରେ କାନ୍ଦ ପକେଇଲ ବାପା ?

ସୀତାନାଥ ॥ ତୋ' ପାଇଁ ? ତୋ' ଭଳି ବାଳୁଙ୍ଗା ଜନ୍ମ କରି ମୁଁ ଯୋଉ ଭୁଲ୍ ଥରେ କରିଛି ···

ସଂବତ୍ ॥ ହି ··· ହି ··· ହି ···

ସୀତାନାଥ ॥ ହସୁଚୁ ? ( ପିଟିବା ପାଇଁ ପୁଣିଥରେ ବାଡ଼ି ଉଠେଇଲେ )

ସଂବତ୍ ॥ ( ବାଡ଼ିଟାକୁ ଧରି ପକେଇ ) ମତେ ପିଟିବ ? ମୁଁ ଭାବିଥିଲି ହଙ୍ଗେ ସଙ୍ଗେ ଗୋଟେ ପ୍ରାଇଜ୍ ଡ଼ିକ୍ଲେୟାର୍ କରିବ ବୋଲି !

ସୀତାନାଥ ॥ ଛାଡ ବାଡ଼ି ।

॥ ଶେଷ୍ୱାଅଛି ॥

ସବନ୍ ।। ଗୁଡ଼୍‌ବନ ।
ସୀତାନାଥ ।। ଗୁଡ଼ ବାଡ଼ି ।
ସବତ୍ ।। ଗୁଡ଼୍‌ବନ ।
ସୀତାନାଥ ।। ତୋ' ମୁଣ୍ଡ ଚୂର୍ କରଦେବ ।
ସବତ୍ ।। କଲ୍ ଦେଖି !
ସୀତାନାଥ ।। ଗୁଡ଼ ମୋ' ବାଡ଼ି ।
ସବତ୍ ।। ମୋ' ସାଙ୍ଗରେ ବଲ କରୁଚ ?
ସୀତାନାଥ ।। ବାପା ସାଙ୍ଗରେ ପରିହାସ ? ମୁଁ କ'ଣ ଅଜା ? ବଦ୍‌ମାସ୍ !
ସବତ୍ ।। ପରିହାସ କରିବନ ? ତମେ ସବୁବେଳେ ସେ ପଛଘରେ ବସି ପିକା ଟାଣିବ ଆଉ ଆଗଘରେ ଆମେ ଯାହା କଲେ ଆଖି ମିଟିକା ମାରି ହସିବ ? ଆଉ କିଛି ଅଧିକା କରିବନ !
ସୀତାନାଥ ।। ବାଜେ ଗପନ କରୁଚ । ଗୁଡ଼ ମୋ' ବାଡ଼ି ...
ସବତ୍ ।। ( ଅନ୍ୟପଟକୁ ଟାଣି ) ଦେଖିବା ... ବଡ଼ ଲୋକ ହେଇଚ ପର ! ଟାଣିଲ୍ ଦେଖି; ହାଃ ... ହାଃ ...

[ ବାଡ଼ିଟା ଟାଣୁ ଟାଣୁ ସୀତାନାଥ ସତରେ ପଡ଼ିଗଲେ ଏବଂ ପ୍ରାୟ ସଂଜ୍ଞାଶୂନ୍ୟ ହୋଇ ପଡ଼ିଲେ । ସବତ୍ ଦୋଷୀ ଭଳି ପାଖକୁ ଯାଇ ତାଙ୍କୁ ପରୀକ୍ଷା କରି ଦେଖନ୍ତି ]

ଓ ! ଆଇ ଆମ୍ ସରି ଫାଦର୍ !
ସୀତାନାଥ ।। ଓଃ ! ଭଗବାନ୍ !
ସବତ୍ ।। ବାପା, ମୁଁ ଏମିତି ଖେଳରେ ...
ସୀତାନାଥ ।। ଆଃ ...
ସବତ୍ ।। ବାପା, ତମକୁ ମୁଁ କେତେ ଭଲ ପାଏ ! ଉଦ୍ ...
ସୀତାନାଥ ।। ଆଃ ପ୍ରଭୁ !

।। ଚୌରଅସି ।।

ସଂବତ୍ ।। ଆଜି ତମ ସାଙ୍ଗରେ କେବେ ଗଲି ଖେଳିବାକୁ । ଭଲ ପିଲା ହେବି ବାପା ! ମୁଁ କାନ ମୋଡ଼ି ହଉଚି ··· ( ସୀତାନାଥ ସେମିତି ପଡ଼ିଥିବା ଦେଖି ) ବାପା ?

ସୀତାନାଥ ।। ଭଗବାନ୍ !

ସଂବତ୍ ।। ଗୋଟାଏ ଗୋଡ଼ରେ ଠିଆ ହେବି ? ମୁଣ୍ଡରେ କୋଇଲା ବୋଝ ଧରି ଠିଆ ହେବି ବାପା !

ସୀତାନାଥ ।। ପାଣି ··· ଟୋପାଏ ...

ସଂବତ୍ ।। ( ବ୍ୟସ୍ତ ହୋଇ ) ଆଣୁଚି ବାପା ···

[ ଦୌଡ଼ିଯାଇ ଗୋଟାଏ କୋଣରେ ଥିବା ସୁରେଇଟା ପରୀକ୍ଷା କରି ଦେଖିଛି । ପାଣି ନାହିଁ । ]

ପାଣି ନାହିଁ ।

ସୀତାନାଥ ।। ଟୋପାଏ ପାଣି ···

ସଂବତ୍ ।। ( ଘରଆଡ଼େ ଦୌଡ଼ି ଦୌଡ଼ି ) ପାଣି ··· ପାଣି ···

ସୀତାନାଥ ।। ଟୋପାଏ ପାଣି !

ସଂବତ୍ ।। ପାଣି ଗୁଡ଼ାକ କଳ ଭିତରେ ବନ୍ଦୀ ହେଇଗଲେ ।

ସୀତାନାଥ ।। ଓଃ ! ପାଣି ମଧ୍ୟ ବନ୍ଦୀ ?

ସଂବତ୍ ।। ହଁ ।

ସୀତାନାଥ ।। ପବନ ?

ସଂବତ୍ ।। ପବନ ମଧ୍ୟ ।

ସୀତାନାଥ ।। ଆଲୋକ ?

ସଂବତ୍ ।। ଆଲୋକ ମଧ୍ୟ ବନ୍ଦୀ !

ସୀତାନାଥ ।। ତା' ହେଲେ ··· ପୁରୁଣା ହେଇଗଲି ବୋଲି ସମସ୍ତେ ମତେ ଏମିତି ପର କରି ଦେଲେ ?

ସଂବତ୍ ।। ତା' ହେଲେ ··· (ଚିତ୍କାର କରି ) ଘାଇ ··· ଘାଉଜ ··· ବର୍ଷା !!

।। ପଞ୍ଚାଥସି ।।

[ ଭିତରୁ ସନ୍ତାପ, ବର୍ଷା ଓ ସିକତା ଆସି ଅର୍ଦ୍ଧ ବୃତ୍ତାକାରରେ ଠିଆ ହେଲେ ]

ସୀତାନାଥ ।। ସମସ୍ତେ ଆସିଗଲ ?

ସନ୍ତାପ / ବର୍ଷା / ସିକତା ।। ତମର କ'ଣ ହେଲା ବାପା ?

ସୀତାନାଥ ।। ମୋର ଦୁଃଖ; ତମେମାନେ ମତେ ଜାଣି ଜାଣି ମାରି ଦେଉଚ ।

ସିକତା ।। ବାପାଙ୍କର କ'ଣ ହେଲା ସବତ୍ !

ସୀତାନାଥ ।। ( ଈଷତ୍ ଉତ୍ତେଜନା ସହ ) ମୁଁ ଆଜି ମରିଯାଇ ପାରେ; କିନ୍ତୁ ମୁଁ ପୁଣିଥରେ ଜନ୍ମ ହେବି ... ମୁଁ ଏକ ପୁନରାବୃତ୍ତି ... ଏକ ...

ସନ୍ତାପ ।। ବାପା !

ବର୍ଷା ।। ତମର କ'ଣ ହେଲା ବାପା ?

ସୀତାନାଥ ।। ( ବେକ ତାଙ୍କର ଛଳିଗଲା ) ମୃତ୍ୟୁ !!

[ ମଞ୍ଚର ଆଲୋକ ମ୍ଳାନ ହୋଇ ଆସିବ । ସମସ୍ତେ ଅଚଳ ଅବସ୍ଥାରେ ସେମିତି ଠିଆ ହୋଇ ରହିଲେ ]

ସିକତା ।। ( ସଂତାପକୁ ଚାହିଁ ) ଅନେକ ଦିନ ହେଲା ସିଏ ପଛଘରଟାରେ ଥିଲେ ।

ବର୍ଷା ।। ପଛଘରଟା ତାଙ୍କୁ ଭଲ ଲାଗେ ।

ସନ୍ତାପ ।। ଅନେକ ଦିନ ହେଲା ସିଏ ମତେ ଗାଳି ଦେଇ ନାହାନ୍ତି ।

ସିକତା ।। ପ୍ରାୟ ତମେ ବିବାହ କରି ସାରିଲା ପରେ !

ବର୍ଷା ।। ନା - ନା, ବିବାହ ପରେ ଥରେ ଦୁଇଥର ତମକୁ ସିଏ ଗାଳି ଦେଇଛନ୍ତି । ତମେ ମିଛ କହୁଛ ଭାଇ !

ସିକତା ।। ସିଏ କାହିଁକି ମିଛ କହିବେ ମ ? ବିବାହ ପରେ ସିଏ ଆଉ ଗାଳି ଦେଇ ନଥିଲେ ।

।। ତତ୍ତ୍ୱମସି ।।

ବର୍ଷା ।। ସେଇଦିନ ସକାଳୁ ? ···

ସନ୍ତାପ ।। କୋଉଦିନ ?

ବର୍ଷା ।। ତମେ ଯୋଉଦିନ ହନିମୁନ୍ କରିବା ପାଇଁ ପୁରୀ ଚାଲିଗଲ !

ସନ୍ତାପ ।। ଓଃ !! ( ହସି ହସି ) ସେଇଟାକୁ ମୁଁ ଗାଳି ଭାବୁନି ।

ସବିତ୍ ।। ମୋଟ ଉପରେ ବାପା ଜଣେ ଭଲ ଲୋକ ଥିଲେ ।

ସିକତା ।। ମତେ କିନ୍ତୁ ବେଳେ ବେଳେ ତାଙ୍କୁ ଦେଖିଲେ ଡର ମାଡ଼େ ।

ସବିତ୍ ।। ଭାଇ !! ( ହଠାତ୍ ଆବିଷ୍କାର କଲା ଭଳି ) ଦେଖିଲ, ବର୍ତ୍ତମାନ କେମିତି ଗୋଟେ ହାଲୁକା ହାଲୁକା ଲାଗୁନି ?

ସନ୍ତାପ ।। ଅନେକ ଦିନ ଧରି, ମନେକର, ତମେ ମୁଣ୍ଡରେ ଗୋଟାଏ ଚୂଡ଼ା ବସ୍ତା ଧରି ଖଲଫ୍ କାମରେ ଯାଉଚ ··· ମୁଣ୍ଡଟା ଭୀଷଣ ଭାବରେ କାଟୁଚି । ଅଥଚ ତମ ପଛରେ ଦିଟା ମେସିନ୍ ଗନ୍ ତମକୁ ଆଗେଇ ଯିବା ପାଇଁ ଆଦେଶ କରୁଛନ୍ତି ··· ଚୂଡ଼ା ବସ୍ତା ତଳେ ପକେଇଲେ ତମକୁ ଗୁଳି କରି ଦିଆଯିବ । କିଛି ଦିନପରେ ହଠାତ୍ ଚୂଡ଼ା ସରିଗଲେ ଯେମିତି ହାଲୁକା ଲାଗେ, ସେମିତି ?

ବର୍ଷା ।। କମ୍ପା ଏମିତି ବି ହୋଇପାରେ ।

ସିକତା ।। କେମିତି ?

ବର୍ଷା ।। କଟିମିଟିଆ ଅନ୍ଧାର । ଝିପି ଝିପି ବର୍ଷା । ଜଙ୍ଗଲ ରାସ୍ତା । ତମ ପଛରେ ଭୂତଟେ ! ତମକୁ ଡ଼ରେଇ ଗୋଡ଼େଇ ଆଣୁଚି ।

ସବିତ୍ ।। ବସ୍ ସାଲ୍ ବାଦ୍ ଭଳି ?

ବର୍ଷା ।। ନା, ତମେ ଧାଉଁଚ । ଖୁବ୍ ଜୋର୍ ରେ । ହଠାତ୍ ଗୋଟାଏ ଗାଁ ଆସିଗଲା ଏବଂ ଘର ପାହାଚ ତଳେ ଦେଖୁଚ ସେଇଟା ଭୂତ ନୁହେଁ । ତମ ଘରର ଝୋଟା !

ସବିତ୍ ।। ଅନ୍କନ୍ୟାଚୁରାଲ୍ । ଘରର ଝୋଟା ହୋଇଥିଲେ ସିଏ ଜାଣି ପାରିନଥାନ୍ତା ?

ବର୍ଷା ।। ନ ହେଲେ ଗାଁର ଗୋଟାଏ ଲୋକ ବି ହୋଇପାରେ !

।। ସନ୍ତାଅସି ।।

ସିକତା ।। ଏମିତି ବି ହୋଇପାରେ !

ପ୍ରତାପ ।। କେମିତି ?

ସିକତା ।। ଅନେକ ଦିନ ଧରି ତମ ଅଫିସ ଘରେ ଗୁଡ଼ିଏ ଅଲୋଡ଼ା ଲିଗା ଫାଇଲ୍ ଅଛି । ନାଲିଆ ଗେରୁଆ ମଲାଟ, ଫିକା ଅକ୍ଷର । ତା' ଉପରେ ଧୂଳି, ପାନ ଛେପ, ଖଣ୍ଡିଆ ବିଡ଼ି । ସେଗୁଡ଼ାକ ମନେକର କୋଡ଼ିଏ ବର୍ଷ ହେଲା ଟାଇପ କରିବା ପାଇଁ ଦିଆଯାଇଥିଲା । ସମସ୍ତ ଅଭାବରୁ କାମଟା ହୋଇ ପାରିନି ଏବଂ ଦିନେ ହଠାତ୍ ଅଫିସକୁ ଆସିଲା ବେଳକୁ ସେଇ ପୁରୁଣା ଫାଇଲ୍ ଗୁଡାକୁ ଗାଈ ଖାଇ ଦେଇଚି; ସେମିତି ଲାଗିଲା ?

ସବ୍ରତ୍ ।। କେଜାଣି ··· ! ଏତେ ହାଲୁକା ଲାଗୁଚି ଯେ ମନେ ହେଉଚି ମୁଁ ଦେହରୁ ଲୁଗାଗୁଡ଼ା ବାହାର କରି ପକାନ୍ତି ।

ବର୍ଷା ।। ତତେ ଶୀତ କରିବନି ?

ସବ୍ରତ୍ ।। ନା ।

ବର୍ଷା ।। ଷ୍ଟ୍ରୀପ୍‌ଟିଜ୍ କରିବ ?

ସବ୍ରତ୍ ।। ସେ ଗୁଡ଼ା ବମ୍ବେରେ ହୁଏ !

ପ୍ରତାପ ।। ବର୍ତ୍ତମାନ କ'ଣ କରିବା ?

ବର୍ଷା ।। ବାପାଙ୍କୁ ନେଇ ପଛ ଘରକୁ ଚାଲିଯିବା ।

ସବ୍ରତ୍ ।। ବାପା ତାଙ୍କ ଉଇଲ୍‌ରେ କ'ଣ ଏକଥା ଲେଖିଛନ୍ତି ?

ସିକତା ।। ନ ଲେଖିଲେ ବି ତାଙ୍କୁ ଏଇଠି ଆଗଘରଟାରେ ପକେଇଦେବା ଆଦୌ ନିରାପଦ ନୁହେଁ ।

ପ୍ରତାପ ।। ପୋଲିସ୍ ଆସିପାରେ ।

ସବ୍ରତ୍ ।। ତାହେଲେ ମତେ ଖୁନି ବୋଲି ବାନ୍ଧି ନେଇଯିବେ ?

ବର୍ଷା ।। ତୁ ଆଉ ଗୋଟେ କାହା ନାଁ କହିଦବୁ ।

ସବ୍ରତ୍ ।। ମରିଗଲା ପରେ ଶବ ଗୁଡ଼ା କୁଆଡେ ଓଜନିଆ ହୋଇଯାଏ ?

।। ଅଠାଅଶି ।।

ସିକତା ॥ 'ଆମିଦ୍' ( Amedee ) ବୋଲି ଗୋଟେ ନାଟକ ପଢ଼ିଥିଲି । ସେଇଠାରେ ଶବଟାର ନଖ ଆଉ ଦାଢ଼ି ବଢ଼ୁଥିଲା ।

ସଂବିତ୍ ॥ କାଲିକି ଆମ 'ଶବ ବାହକ ମାନେ'ରେ ଶବଟା ପୋଷ୍ଟମ୍ୟାନ୍ ହୋଇ ଯାଇଚି ।

ବର୍ଷା ॥ ବାପାଙ୍କର ମଧ୍ୟ ଦାଢ଼ି ଆଉ ନଖ ବଢ଼ିବ ?

ସଂତାପ ॥ ଶୁଣ, ଏ ସବୁ ଫାଲ୍‌ତୁ କଥାରୁ କିଛି ମିଳିବ ନାହିଁ । ଚାଲ ସମସ୍ତେ ତାଙ୍କୁ କାନ୍ଧରେ ଧରି ପଛଘରକୁ ନେଇଯିବା ।

ବର୍ଷା ॥ ଭାଉଜ, ତମେ ଗୋଟେ ପଟେ — ଆଉ ଭାଇ ··· ସଂବିତ୍ ଭାଇ ଗୋଟେ ପଟେ ···

ସଂତାପ ॥ ଯେସ୍ ।

ସଂବିତ୍ ॥ ( ଶବ ଉଠାଉ ଉଠାଉ ) ହ୍ୟାଲ୍ଲାରେ ହାଲ୍ଲା ···

ବର୍ଷା ॥ ହୋ — ହୋ — ହୋ ···

ସଂବିତ୍ ॥ ଉଠାରେ ଭାଲ୍ଲା ··· ···

ବର୍ଷା ॥ ହୋ — ହୋ — ହୋ ···

ସଂତାପ / ସିକତା / ବର୍ଷା ॥ ଏଇସା !!

ସଂବିତ୍ ॥ ଆଉରି ଟିକେ !

ସଂତାପ / ସିକତା / ବର୍ଷା ॥ ଏଇସା !!

ସଂବିତ୍ ॥ କାନ୍ଧ ଉପରେ !!

ସଂତାପ / ସିକତା / ବର୍ଷା ॥ ଏଇସା !!

ସଂତାପ ॥ ଓଃ ! ଉଠେଇ ହଉନି ।

ସଂବିତ୍ ॥ ସିଏ କ'ଣ କମ୍ ଓଜନ ? ବର୍ଷ ବର୍ଷ ଧରି ସିଏ ବଞ୍ଚିଥିଲେ ।

ସଂତାପ ॥ ତାଙ୍କୁ ପଛଘରଟାରେ ଠେଲି ଦେଲେ ରକ୍ଷା ପାଇଯିବା ।

ସିକତା ॥ କିନ୍ତୁ ଆଦୌ ଘୁଞ୍ଚୁ ହଉନି ।

ସଂବିତ୍ ॥ ଚେଷ୍ଟା କର ।

॥ ଅଣାନବେ ॥

ବର୍ଷା ।। ତା' ହେଲେ ଏମିତ ଠିଆ ହେଇ ରହିବା ?

ସଂତାପ ।। ଚେଷ୍ଟା କର ।

ସଂବିତ୍ ।। ମୁଁ ଜାଣେ ତମେ ଯେତେ ଚେଷ୍ଟା କଲେ ବି ତାଙ୍କ ଶବଟାକୁ କାନ୍ଧରେ ଧରି ଏମିତ ଠିଆ ହେଇଥିବ ।

ସଂତାପ ।। ଏଇଠି ? ଏଇ ଆଗଘରଟାରେ ?

ସଂବିତ୍ ।। ପ୍ରତି ବର୍ଷ ଶ୍ରାଦ୍ଧ କରୁଥିବ ... ଜଳ ତର୍ପଣ ... ଗଙ୍ଗାରେ ଅସ୍ଥି ।

ସିକତା ।। ସ୍ମୃତି ଆଉ ସ୍ୱପ୍ନ ମାନଙ୍କୁ ନେଇ ... ?

ସଂବିତ୍ ।। ( ହସି ) ଈଶ୍ୱରଙ୍କ ପୁତ୍ର ଓ କନ୍ୟାମାନେ ! ତମେ କହିପାରିବନି, ବର୍ତ୍ତମାନ ସ୍ୱପ୍ନ ଦେଖୁଚ କିମ୍ବା ଶ୍ରାଦ୍ଧ କରୁଚ । କାରଣ ତମେ ସମସ୍ତେ ଗଦାଏ ଗଦାଏ ଭଙ୍ଗା ପ୍ରତିବିମ୍ବ ।

ସଂତାପ ।। ନନ୍‌ସେନ୍‌ସ୍ ! ଉଠାଅ ଏଇଟାକୁ ପଛଘରକୁ ନେବା ।

ସଂବିତ୍ ।। ମୁଁ ଜାଣେ ତମେ ତାଙ୍କୁ ପଛଘରକୁ ନେଇ ପାରିବନି ।

ବର୍ଷା ।। ଭାରି ଓଜନିଆ, ଓଃ ! ମୋ କାନ୍ଧ କାଟିଲାଣି ।

ସଂତାପ / ସିକତା ।। ଓଃ !! ମୁଣ୍ଡ ଉପରେ ଭୀଷଣ ବୋଝ ।

ସଂବିତ୍ ।। ଉପାୟ ନାହିଁ । ଏମିତ ଭାର ବୋହିବା ପାଇଁ ହୁଏତ ... ( ହସିକି ଆସ୍ତେ ) ଅନେକ ଦିନ ପର୍ଯ୍ୟନ୍ତ ଆମକୁ ଏମିତ ଠିଆ ହେବାକୁ ପଡ଼ିପାରେ । କାରଣ ତାଙ୍କୁ ଆମେ ପଛଘରକୁ ନେଇ ପାରିବାନି ।

[ ମଞ୍ଚର ଆଲୁଅ ତୀବ୍ର ହେଲା ।
ଯବନିକା ପୂର୍ବରୁ ଆଲୁଅ ତୀବ୍ର ...
ସମସ୍ତଙ୍କ ମୁହଁରେ ଆଲୋକର ଯନ୍ତ୍ରଣା,
ବୋଝର ମଧ୍ୟ । ସେଇ ଦିନଠୁ
ଏମାନେ ଶବଟାକୁ ଧରି ଠିଆ ହେଇ
ରହିଥିବା ଦେଖାଯାଇଛି । ]

।। ନଟେ ।।

# ପୃଷ୍ଠବଂଧ

●

[ ସେମିତି ଅନନ୍ତ ଭବିଷ୍ୟତ ଯାଏଁ ନାଟକୀୟ ଚରିତ୍ର ମାନେ ସୀତାନାଥଙ୍କ ଶବବାହକ ହୋଇ ଠିଆ ହୋଇଛନ୍ତି; ଏଥିରେ ସନ୍ଦେହ ନାହିଁ । ତାହା ମଧ୍ୟ ତୀବ୍ର ଆଲୋକ ସମ୍ପାତ ଭିତରେ ।

କ୍ରମେ ଆଲୋକ ଦ୍ୱାରା ସେମାନଙ୍କ ଅବସ୍ଥିତି ସିଲହୁଟ୍ ଭଳି ଦେଖାଯିବ । ଏଣିକି ମଞ୍ଚର ଆଲୋକର ରଙ୍ଗ ପରିବର୍ତ୍ତିତ ହୋଇ ସବୁଜ ହେବ । ଏହି ସବୁ ଦୃଶ୍ୟ ସଙ୍ଘଟିତ କରାଇବା ପାଇଁ ନେଟ୍‌ସ୍କ୍ରିନ୍‌ର ଆଶ୍ରୟ ମଧ୍ୟ ନିଆଯାଇ ପାରେ । ବିକଳ୍ପତଃ ମଞ୍ଚକୁ ଅନ୍ଧାର କରାଯାଇ କିମ୍ବା ପରଦା ପକାଇ ପୁଣି ପରଦା ଦେଖାଇ ଦିଆ ଯାଇପାରେ ।

ପରବର୍ତ୍ତୀ ଅଭିନୟରେ କୌଣସି ସଂଳାପ ନାହିଁ । ଅଭିନୟ ମୂକ ଭାବେ କରାଯିବା ଉଚିତ । କଣ୍ଢେଇ ନାଚ ଶୈଳୀରେ । ଚରିତ୍ର ମାନଙ୍କର ଚାଲି ଚଳନ ( movement ) ନିହାତି ଡମି ଭଳି ଏବଂ ଆବଶ୍ୟକ ସ୍ଥଳେ ପରଦା ଅନ୍ତରାଳରୁ ସ୍ୱର ଓ ଶବ୍ଦ ନିକ୍ଷେପ କରାଯାଇ ପାରେ । ଅଭିନୟର ସିନେରିଓ ନିମ୍ନରେ ପ୍ରଦତ୍ତ ହେଲା । ]

ସୀତାନାଥ ଦାଣ୍ଡିଟିଏ ଧରି ସାମନା ଘର ସୋଫାରେ ବସିଲେ । ହାତରେ ପିକା ନାହିଁ । ମୁଣ୍ଡରେ ଓଢଣା ପକାଇଛି ବୋଧ ହୁଏ ନାଲି ଶାଢିଟିଏ ପିନ୍ଧି ଆସିଲା ସିକତା । ହାତରେ ଭାଗବତ ପୋଥିଟିଏ । ସୀତାନାଥଙ୍କ ଗୋଡ଼ ତଳେ ବସି, ଦୀପ ରୁଖାଟିଏ ଜାଳି ପୁରାଣ ପଢୁଛି । ( ଅନ୍ତରାଳରୁ ଆବୃତ୍ତି କରାଯାଇ ପାରେ ) ହସି ହସି ବର୍ଷା ଆସିଛି । ହାତରେ କଲେଜରୁ ଭଲ ଛାତ୍ରୀ ହିସାବରେ ପାଇଥିବା ପୁରସ୍କାର । ସଂବିତ୍ ଆସିଛି ।

•

॥ ଏକାନବେ ॥

ଏମ୍. ଏ. ପାଶ୍‌କରି ପାଇଥିବା ଅଧ୍ୟାପକ ଚାକିରିର ଅର୍ଡର ନେଇ । ସନ୍ତାପ ବୁଢାଙ୍କ ପାଇଁ କିଛି ଲୁଗା ନେଇ ଅଫିସରୁ ଫେରୁଛି । ସମସ୍ତେ ବସି ସନ୍ଧ୍ୟାରେ ଭଜନ ଗାଉଛନ୍ତି । ବୁଢାଙ୍କ ଆଖିରୁ ଗଳି ପଡୁଛି ଦୁଇଧାର ଲୁହ; ହସି ହସି, ତାକୁ ସେ ପିନ୍ଧିଥିବା ଲୁଗା କାନରେ ପୋଛି ପକାଉଛନ୍ତି ।

ବର୍ଷା ଓ ସିକତା ଫାଜିଲାମି ଆଉ ଝଗଡ଼ାରେ ବ୍ୟସ୍ତ । ସଂବିତ୍ ଆଁସିଚ ଆଉ ଚକୁଲି ବାହାର କରୁଛି । ସୀତାନାଥ ଆସି ସେମାନଙ୍କୁ ସ୍ନେହରେ ତାଙ୍କ ବାଡ଼ିରେ ପିଟିଛନ୍ତି । ଝଗଡ଼ା ଭାଙ୍ଗି ଯାଇଛି ।

ସକାଳୁ ଉଠି ସିକତା ସଂତାପର ପାଦ ଧୂଳି ନେଉଛି । ତାପରେ ଘର ଭିତରେ ସାମୂହିକ ପୂଜା ପାଠ । ଥାଳିରେ ପ୍ରସାଦ ଆଉ ନୈବେଦ୍ୟ ନେଇ ସିକତା ପ୍ରଥମେ ସ୍ୱାମୀଙ୍କୁ ଓ ପରେ ଶ୍ୱଶୁରଙ୍କୁ ଦେଇଛି ।

ସନ୍ଧ୍ୟାରେ ସଂତାପ ଦୁଇଟି ଏକାଭଳି ଶାଢୀ ନେଇ ଆସିଛି । ଗୋଟିଏ ବର୍ଷା ପାଇଁ ଓ ଅନ୍ୟଟି ସିକତା ପାଇଁ । ସିକତା, ସଂତାପ ଅଫିସ ଯିବା ବେଳେ ତାଁ ହାତରେ ପାନ ଓ ଫାଇଲ୍ ବଢ଼େଇ ଦେଉଛି । ସିକତାର ନାକଟି ଚିପି ଦେଇ ଚାଲିଗଲା ବେଳେ ଅଳି କରିବ ଶୀଘ୍ର ଆସିବା ପାଇଁ ।

ସୀତାନାଥ ଏସବୁ ଦେଖି ଖୁସି ହେଉଥିବେ ।

ଏ ସବୁ ଅନୁଚ୍ଚାରିତ / ଉଚ୍ଚାରିତ ଶବ୍ଦ ଓ ଶବ୍ଦ ପ୍ରକ୍ଷେପ ଦ୍ୱାରା ସଂଘଟିତ ହେଲାବେଳେ ମଞ୍ଚର ଆଲୋକ ପୁଣି ଡେଜାଲ୍ୟାନ୍ ହେବ ଏବଂ ପୁଣି ଦେଖାଗଲା ବେଳକୁ ସୀତାନାଥଙ୍କ ଶବ ନେଇ ଅନ୍ୟମାନେ ଠିଆ ହୋଇଛନ୍ତି ।

ଏଇଠି ନାଟକର ସମାପ୍ତି ।

ତା ୧୮ । ୬ । ୭୦

**ରମେଶ ପ୍ରସାଦ ପାଣିଗ୍ରାହୀ**
ଶ୍ରୀରାମ ନଗର, ପାନ୍ଥ କଲୋନୀ
ବ୍ରହ୍ମପୁର — ୨